প্রথম ভাগ

# ଓଡ଼ିଆ ବର୍ଣ୍ଣମାଳା

ପ୍ରଥମ ଭାଗ

## ସ୍ୱରବର୍ଣ୍ଣ

| | | | | | |
|---|---|---|---|---|---|
| ଅ | ଆ | ଇ | ଈ | ଉ | ଊ |
| ଋ | ୠ | ଏ | ଐ | ଓ | ଔ |

## ବ୍ୟଞ୍ଜନ ବର୍ଣ୍ଣ

| | | | | |
|---|---|---|---|---|
| କ | ଖ | ଗ | ଘ | ଙ |
| ଚ | ଛ | ଜ | ଝ | ଞ |
| ଟ | ଠ | ଡ | ଢ | ଣ |
| ତ | ଥ | ଦ | ଧ | ନ |
| ପ | ଫ | ବ | ଭ | ମ |
| ଯ | ର | ଲ | ୱ | ଶ |

| | | | | | |
|---|---|---|---|---|---|
| ଷ | ସ | ହ | ଂ | ଃ | ଁ |

## ଅତିରିକ୍ତ ବର୍ଣ୍ଣ

| | | | | |
|---|---|---|---|---|
| ଡ଼ | ଢ଼ | ୟ | ଳ | କ୍ଷ |



☞ ସ୍ୱରବର୍ଣ୍ଣ

# ଅକ୍ଷର ଶିକ୍ଷା

ଅ



ଅରଟ

ଆ



ଆତ

ଇ



ଇଟା

ଈ



ଈଷ

ଉ



ଉଇ

ଊ



ଊଣା

ଋ





ଋଣ

ୠ



ଏ





ଏକ

ଐ



ଐରାବତ

ଓ



ଓଟ

ଔ



ଔଷଧ



## ବ୍ୟଞ୍ଜନ ବର୍ଣ୍ଣ

କ



କମଳା

ଖ



ଖଟ

ଗ



ଗଛ

ଘ



ଘର

ଙ



ଚ



ଚକ

ଛ



ଛତୁ

ଜ



ଜଟ

ଝ



ଝରଣା

ଞ



ଟ



ଟଗର

ଠ



ଠଣା

ଡ

ଡଙ୍ଗା

ଢ

ଢ଼ମଣା

ଣ

ବଣ

ତ

ତରା

ଥ


ଥଳି

ଦ

ଦରଜି

ଧ

ଧନୁ

ନ

ନଈ

ପ

ପଥର

ଫ

ଫଉଜ

ବ

ବଗ

ଭ

ଭଜନ

ମ



ମକା

ଯ



ଯଅ

ର



ରଥ

ଳ



ନଳ

ୱ



ଟାୱାର

ଶ



ଶଗଡ଼

ଷ



ଷଣ୍ଢ

ସ



ସପୁରି

ହ



ହଳ

କ୍ଷ



କ୍ଷତ

ୟ



ଗୟଳ

ଲ



ଲତା

| ଂ | ଃ | ଁ |
| --- | --- | --- |
|  |  |  |
| ହଂସ | ଦୁଃଖୀ | ଭଅଁର |



## ଯୁକ୍ତବର୍ଣ୍ଣ



| | | | | | | | |
| --- | --- | --- | --- | --- | --- | --- | --- |
| ଙ୍କ | ଙ୍ଖ | ଙ୍ଗ | ଙ୍ଘ | ଞ୍ଚ | ଞ୍ଛ | ଞ୍ଜ | ଞ୍ଝ |
| ଣ୍ଟ | ଣ୍ଠ | ଣ୍ଡ | ଣ୍ଢ | ନ୍ତ | ନ୍ଥ | ନ୍ଦ | ନ୍ଧ |
| ମ୍ପ | ମ୍ଫ | ମ୍ବ | ମ୍ଭ | କ୍କ | କ୍ତ | କ୍ର | ଚ୍ଚ |
| ଚ୍ଛ | ଜ୍ଜ | ଜ୍ଝ | ଟ୍ଟ | ଡ୍ଡ | ଡ୍ଢ | ତ୍ତ | ତ୍ଥ |
| ଦ୍ଦ | ପ୍ର | ଦ୍ଭ | ଦ୍ମ | ଦ୍ଧ | ଦ୍ୱ | ଧ | ଭ୍ର |
| ଦ୍ଗ | ପ୍ତ | ଗ୍ନ | ନ୍ନ | ପ୍ପ | ପ୍ଲ | ମ୍ର | ଲ୍କ |
| ଲ୍ପ | ଲ୍ଲ | ଶ୍ଚ | ଶ୍ଛ | ସ୍କ | ସ୍ଖ | ସ୍ତ | ସ୍ଥ |
| ସ୍ପ | ସ୍ଫ | ସ୍ମ | ଷ୍କ | ଷ୍ଟ | ଷ୍ଠ | ଷ୍ପ | ହ୍ଲ |



# ‘ଅ’ ବନା

ଅଖ ଆଇ ଈଶ ଊନ ଏକ
ରଖ ଉଇ ଆାସ ଋଣ ଓଟ



କର ଚକ ଟକ ତପ ପଟ ମନ ଯଶ
ଖର ଛକ ଠକ ଥର ଫଳ ଯମ ଚଷ
ଗଛ ଜଳ ଡର ଦଶ ବଡ଼ ରଚ ରସ
ଘଟ ଝର ଢମ ଧନ ଭଲ ଲୟ ହଳ



ଅଳସ ଦଶମ ସହଜ ଶୟନ ଦରଶନ
କଳସ ଶକଟ ସରଳ ସମୟ ରସମୟ
ଆସନ ରଜକ ସଲଖ ସରସ ସମତଳ
ବସନ ଶରଣ ବୟସ ଔଷଧ ଶଶଧର

ଭଜମନ । ଧନଜନ । ରଥ ଗଢ଼ । ଓଟ ଚଢ଼ ।
ଘରପଛ । ବରଗଛ । ହଳ ଧର । ହଳ କର ।



ପଥର ଘର । ବଡ଼ ଜବର ।
ପଣସ ରସ । ବଡ଼ ସରସ ।



# 'ଆ' କାର ଯୋଗ

କ + ଆ = କା  ଖ + ଆ = ଖା

ଗା ଘା ଚା ଛା ଜା ଝା ଟା ଠା ଡା ଢା ଣା ତା ଥା ଦା
ଧା ନା ପା ଫା ବା ଭା ମା ଯା ରା ଲା ଶା ଷା ସା ହା



କାମ ଜାଲ ପଣା ପାଲ ରାଜା
ଖାଲ ଝାଲ ତାଳ ଫାଳ ଲାଜ
ଗାଈ ଟାଣ କଥା ବାସ ଆଶା
ଘାସ ମଠା ଦାନ ସଭା ଭାଷା
ଚାଷ ଡାଳ ଧାନ ମାଛ ସାପ
ଛାତ ଢାଲ ନାଶ ଯାତ ହାତ

କାମନା ସାହସ କମାର ଉପବାସ
ବାସନା ସମାନ ବରଡ଼ା ଅବକାଶ
ସାଧନା ସକାଳ ଡାମରା ଐରାବତ
ଯାତନା ଶାସନ ପାକଲା ନାରାୟଣ
ପାଷାଣ ସରଳା କଲରା ନାଗସାପ



ପାଠ ପଢ଼ । ନଖ କାଟ । ଜାମା ସଫା ରଖ ।
ବାପା ଭାଇ କଥା ମାନ । ତତଲା ଭାତ ଖାଅ ।



ସାତ ବାର । ପକା ଗାର । ବାର ମାସ । କର ଚାଷ ।
ତାରାଭରା ଆକାଶ । ଗଛଥରା ବତାସ ।
ଚାଷକର, ଧାନ କାଟ । ଚାଲ ଭାଇ ଭଲ ବାଟ ।
ମନ ଲଗାଇ ପାଠ ପଢ଼ । ସଦା ଅଳସ ବାଟ ଛାଡ଼ ।

ଟା = ଟ୍ରା । ଭା = ଭ୍ରା । ରା = ର୍ । ଲା = ଲ୍ (କେତେକ ଅକ୍ଷର ଏପରି ଲେଖାଯାଏ)



# ହ୍ରସ୍ୱ 'ଇ'କାର ଯୋଗ

କ + ଇ = କି    ଖ + ଇ = ଖି(ଖ୍ି)

ଗି ଘି ଚି ଛି ଜି ଝି ଟି ଠି ଡି ଢ଼ି ଣି ତି ଥି ଦି
ଧି ନି ପି ଫି ବି ଭି ମି ଯି ରି ଳି ଶି ଷି ସି ହି



| | | | | |
|---|---|---|---|---|
| ଚକି | ଜିଆ | ମଣି | ପିତା | ଲିପି |
| ଆଖି | ମଝି | ଜାତି | ଫିତା | ନିଶି |
| ଗିରି | ମାଟି | ତିଥି | ବିଷ | ଋଷି |
| ଘିଅ | ଠିକା | ଦିବା | ଭିଡ଼ | ସିଝା |
| ମାଛି | ଡିରା | ଶନି | ହରି | ଅଗ୍ନି |



| | | | |
|---|---|---|---|
| ଶିଶିର | ମିଳନ | ଅତିଥି | ଅତିଶୟ |
| ଅଶନି | ବଡ଼ିମା | ମହିଷ | ପରିଚୟ |
| ହରିଣ | ଦିବସ | ବିଷମ | ଅଭିଳାଷ |
| ବିଚାର | ବାଳିକା | ବଧିର | ଇତିହାସ |

ହରିଣ ନ ଦିଏ ଧରା । ଦଉଡ଼ନା ବଡ଼ ଖରା ।
ଛବିବହି କିଣି ଆଣ । ଭଲ ପାଣି କର ପାନ ।



ଅରଣା ମହିଷ ରହିଛି ଅନାଇ ।
ମହିଷର ପାଖ ନ ଯାଅ ଦନାଇ ।
ରାତି ପାହିଲାଣି ରାବଇ କାଉ ।
ଉଠ ଉଠ ମଠ ନ କର ଆଉ ।



କି = କ୍ି । ତି = ତ୍ି । ଦି = ଦ୍ି । ଖି = ଖ୍ି । ଥି = ଥ୍ି । ଧି = ଧ୍ି ।
(କେତେକ ଅକ୍ଷର ଏହିପରି ଲେଖାଯାଏ)



# ଦୀର୍ଘ 'ଈ' କାର ଯୋଗ

କ + ଈ = କୀ    ଖ + ଈ = ଖୀ

ଗୀ ଘୀ ଚୀ ଛୀ ଜୀ ଝୀ ଟୀ ଠୀ ଡୀ ଢ଼ୀ ଣୀ ତୀ ଥୀ ଦୀ
ଧୀ ନୀ ପୀ ଫୀ ବୀ ଭୀ ମୀ ଯୀ ରୀ ଳୀ ଶୀ ଷୀ ସୀ ହୀ



ବୀଣା ବୀର ବାଣୀ ନାରୀ ଶୀତ
ଗୀତ ରୀତି ଦୀନ ଧନୀ ମୀନ
ତୀର ହୀନ ଦୀପ ଧୀର କୀଟ
ଲୀନ ବୀଜ ଲୀଳା ଭୀତ ସୀମା
ନୀତି ସତୀ ରାଣୀ ଶଶୀ ଫଣୀ
ନଦୀ ମାନୀ ନୀର ପୀଡ଼ା ସୀତା

ସମୀର ଧୀବର ରଜନୀ ସମୀରଣ
ଜନନୀ ଶୀତଳ ଧରଣୀ ମାନନୀୟ
ଭଗିନୀ ଗଭୀର ତରଣୀ ବିପରୀତ
ଶରୀର ଜୀବନ ଭଉଣୀ ରମଣୀୟ
ଯାମିନୀ ରମଣୀ କାହାଳୀ ମହାଦୀପ





ସମୀର ବହଇ ଧୀର । ଶୀତଳ ନଦୀର ନୀର ।
ରଜନୀ ପାହିଲା ଆସି । ଧରଣୀ ଉଠିଲା ହସି ।
କାହାଳୀ ବଜାଇ ଗାଇବା ଗୀତ ।
ପାଠପଢ଼ି ହାତୀ ଚଢ଼ିବା ମିତ ।





# ହ୍ରସ୍ୱ 'ଉ'କାର ଯୋଗ

କ + ଉ = କୁ　　ଖ + ଉ = ଖୁ

ଗୁ ଘୁ ଚୁ ଛୁ ଜୁ ଝୁ ଟୁ ଠୁ ଡୁ ଢୁ ଣୁ ତୁ ଥୁ ଦୁ ଧୁ
ନୁ ପୁ ଫୁ ବୁ ଭୁ ମୁ ଯୁ ରୁ ଳୁ ଶୁ ଷୁ ସୁ ହୁ ୟୁ ଲୁ



ଶିଶୁ　ମୁନି　ତରୁ　ଋତୁ　ଧନୁ
ସରୁ　ଲଘୁ　ରୁଚି　ବାହୁ　ତନୁ
ମୁଖ　ଯଦୁ　ଶୁଚି　କୁଳ　ଗୁଣ
ସୁଖ　ସାଧୁ　ଶୁଭ　ସୁନା　କୁଶ
ପୁର　ସୁଧା　ଭୀରୁ　ବୁଢ଼ୀ　ତୁଷ
ସୁର　ପଶୁ　ଚାରୁ　ବିଧୁ　ବାୟୁ

କୁକୁର　ଆକୁଳ　ଯୁବକ　ଫୁଲଗଛ
ପୁଳିନ　ମୁକୁଳ　ପୁରୁଷ　ଶୁଭଦିନ
ଅସୁର　କୁସୁମ　କୁଶଳ　ହୁତାଶନ
ସୁଜନ　କୁଳୀନ　ମଧୁର　ସମୁଦାୟ
ଚାତୁରୀ　ସୁଶୀଳ　ମୁରଲୀ　ନିରୁପାୟ





ବିଲୁଆ ବଡ଼ ଚତୁର । ପଇଡ଼ ବଡ଼ ମଧୁର ।
ବଉଳ ଫୁଲର ବାସ । ଚହଟଇ ଚଉ ପାଶ ।

ସକାଳୁ ଉଠି ମୁଖ ଧୁଅ ।
ମିଛ ନ କହି ସତ କୁହ ।





## ଦୀର୍ଘ 'ଊ'କାର ଯୋଗ

କ + ଊ = କୂ　　ଖ + ଊ = ଖୂ

ଗୂ ଘୂ ଚୂ ଛୂ ଜୂ ଝୂ ଟୂ ଠୂ ଡୂ ଢୂ ଣୂ ତୂ ଥୂ ଦୂ
ଧୂ ନୂ ପୂ ଫୂ ବୂ ଭୂ ମୂ ଯୂ ରୂ ଲୂ ଶୂ ଷୂ ସୂ ହୂ



କୂପ ମୂକ ଶୂଳ ମୂଷିକ ନିରୂପଣ
ରୂପ ଧୂଳି ମୂଳ ମୟୂର ଅପରୂପ
ଧୂପ ଯୂଥ ଭୂମି ନୂତନ ଅନୁକୂଳ
ଦୂତ ପୂଜା ଧୂମ ଭୂଷଣ ସୂତାହାଟ

ଅଇଲାଣି ବିଲାଇ
ମୂଷା ଯିବ ପଳାଇ ।





ନୂପୁର ବାଜଇ ରୁଣଝୁଣ । ନଳକୂପ ଜଳ କର ପାନ ।
ମୟୂର ନାଚଇ ଢଳିଢଳି । ପୂଜା ଥାଳି ନିଅ ବନମାଳୀ ।





## 'ଋ'କାର ଯୋଗ

କ + ଋ = କୃ　　ଖ + ଋ = ଖୃ

ଗୃ ଘୃ ଚୃ ଛୃ ଜୃ ଝୃ ଟୃ ଠୃ ଡୃ ଢୃ ତୃ ଥୃ ଦୃ
ଧୃ ନୃ ପୃ ଫୃ ବୃ ଭୃ ମୃ ଯୃ ଲୃ ଶୃ ଷୃ ସୃ ହୃ



ତୃଣ ଘୃତ ନୃପତି ବୃଷଭାନୁ
ମୃଗ ବୃଥା ପୃଥିବୀ କୃଷିକାରୀ
ବୃଷ ତୃଷା ଶୃଗାଳ ଜତୁଗୃହ
ଗୃହ କୃଷି କୃଷକ ଅଧିକୃତ

ଦିନରାତି କୃଷି କରି କୃଷକ । ପାଳୁଅଛି ଏହି ଜଗତ ଯାକ ।
ଶୃଗାଳ ବିଚାର ବୃଥା ନ କର । ଗୃହ ବିବାଦକୁ ବଳ କାହାର ।
ମୃଗ ତୃଣ ଖାଇ ବୁଲଇ ବନ । ବାଘ ବିନାଶଇ ତା'ର ଜୀବନ ।





## 'ଏ'କାର ଯୋଗ

କ + ଏ = କେ

ଖ + ଏ = ଖେ

ଗେ ଘେ ଚେ ଛେ ଜେ ଝେ ଟେ ଠେ ଡେ ଢେ ଣେ ତେ ଥେ ଦେ
ଧେ ନେ ପେ ଫେ ବେ ଭେ ମେ ଯେ ରେ ଲେ ଶେ ଷେ ସେ ହେ



ମେଘ ମେଷ ଶେଣି ସେବା ଆଦେଶ
ବେଶ ଶେଷ ଦେଶ ସେନା ବିଦେଶ
କେଶ ଲେଖା ରେଣୁ ହେତୁ ନିଷେଧ
ତେଜ ଲେଶ ବେଣୁ ନେବା ଗଣେଶ
ରେଖା ବେଣୀ ସେତୁ ଧେନୁ ବିଶେଷ



ଛେଳି ଛୁଆଟିକି ଦେଖ । ମେଷ ଛୁଆଟିକୁ ରଖ ।
ଚକରେ ଲଗାଅ ଅଖ । ପାକଲା ବେଲକୁ ଚାଖ ।
ଲେଖା ପଢ଼ାରେ ଦିଅ ମନ । ହେଳା ନ କର ଶିଶୁଗଣ ।
ଖେଳା କର ହେ ପଢ଼ା ସାରି । ଦେଖିବ ଆସ ଶୁଆଶାରି ।



## 'ଐ'କାର ଯୋଗ

କ + ଐ = କୈ

ଖ + ଐ = ଖୈ

ଗୈ ଘୈ ଚୈ ଛୈ ଜୈ ଝୈ ଟୈ ଠୈ ଡୈ ଢୈ ଣୈ ତୈ ଥୈ ଦୈ
ଧୈ ନୈ ପୈ ଫୈ ବୈ ଭୈ ମୈ ଯୈ ରୈ ଲୈ ଶୈ ଷୈ ସୈ ହୈ

ତୈଳ ନୈଶ ଶୈବ କୈଳାସ ବୈଶାଖ
ଦୈବ ହୈମ ବୈଧ ଶୈଶବ ଶୈବାଳ
ଶୈଳ ବୈର ଜୈବ ସୈକତ ସୈନିକ





ବୈଶାଖ ମାସେ ବଡ଼ ଖରା । ଅତି ତପତ ହୁଏ ଧରା ।
ବଡ଼ ହେଲେ ଆମେ ସୈନିକ ହେବା । ଦେଶ ଜାତି ଲାଗି ଜୀବନ ଦେବା ।
ଶୈଶବ କାଳରୁ କରିବା ପଣ । ସତ କହି ସଦା ରଖିବା ଟାଣ ।



## 'ଓ'କାର ଯୋଗ

କ + ଓ = କୋ    ଖ + ଓ = ଖୋ

ଗୋ ଘୋ ଚୋ ଛୋ ଜୋ ଝୋ ଟୋ ଠୋ ଡୋ ଢୋ ଣୋ ତୋ ଥୋ ଦୋ
ଧୋ ନୋ ପୋ ଫୋ ବୋ ଭୋ ମୋ ଯୋ ରୋ ଲୋ ଶୋ ଷୋ ସୋ ହୋ

ଘୋର ଭୋଗ ସୋମ ଲୋଚନ ସହୋଦର
ଘୋଡ଼ା ଲୋକ ହୋମ ଭୋଜନ ପୁରୋହିତ
ରୋଷ ଶୋକ ଗୋପ କପୋତ ପରିଶୋଧ
ଚୋର ଯୋଗ ରୋଗ ଗୋକୁଳ ପରିତୋଷ





ମଧୁର ବିନୟ ବଚନ, କହି ତୋଷିବ ଜନମନ ।

ଗୋଲାପ ଫୁଲ ବଡ଼ ଉଜଳ
ଆସହେ ତୋଳିବା ହୋଇଣ ମେଳ ।
ନ କର ରୋଷ ନ ଧର ଦୋଷ
ଭାଇ ଭଉଣୀଏ ଖେଳିବା ଆସ ।



## 'ଔ'କାର ଯୋଗ

କ + ଔ = କୌ    ଖ + ଔ = ଖୌ

ଗୌ ଘୌ ଚୌ ଛୌ ଜୌ ଝୌ ଟୌ ଠୌ ଡୌ ଢୌ ଣୌ ତୌ ଥୌ ଦୌ
ଧୌ ନୌ ପୌ ଫୌ ବୌ ଭୌ ମୌ ଯୌ ରୌ ଲୌ ଶୌ ଷୌ ସୌ ହୌ



ଗୌର ଶୌଚ ଗୌରବ କୌପୀନ ପୌଷମାସ
ସୌଧ ନୌକା ସୌରଭ କୌଶଳ ଭୌମରାଜ
ଧୌତ ଲୌହ ଯୌତୁକ ଯୌବନ ମୌନାବତୀ
ଗୌଣୀ ତୌଲ କୌତୁକ ପୌରୁଷ ସୌଦାଗର

ଗୌରହରି
ନୌକା ବାହୁଛି ଜୋର କରି ।
ଗୌରୀ ଦେଇ
ଯୌତୁକ ନେଲା ଅଠର ଗାଈ ।
ସୌଧ ଗଡ଼
କୌଶଳ କରି ଘୋଡ଼ାରେ ଚଢ଼ ।





# ବିବିଧ ପାଠ



ଶିଖା କୃପା ହାନି ଯୂଥ ସୁଖୀ
ଘୃଣା ସୀମା ରାଶି କାଶୀ ମଶା
ଶୋଭା ଆକୃତି ଦୟାଳୁ ଏକାକୀ ପିପାସା
କୋକିଳ ଷୋଡ଼ଶ ମୋହିନୀ ମେଧାବୀ ନିଷେଧ



ବରଗଛ ଯୂଇଫୁଲ କୈଳାସ ଗିରି
ଧଳାଗାଈ ନଦୀକୂଳ କାଉକୋଇଲି
ବୁଢ଼ାହାତୀ ମିଠାବେଲ ସୋରିଷ ଗଛ
କଳାଘୋଡ଼ା ଧଳାବୃଷ ବଡ଼ କୌତୁକ

ସକାଳ ହେଲାଣି । ଉଠ, ମୁଖ ଧୁଅ । ଶୀତଳ ପବନ ବହୁଅଛି । ବାହାରେ ଟିକିଏ ବୁଲିଆସ । ବଗିଚାରେ କେତେ ଫୁଲ ଫୁଟିଅଛି । ଆହା ! ଫୁଲ କିପରି ବାସୁଅଛି । କାଉ ବୋବାଉଅଛି । ଘରଚଟିଆ ଏଠାରୁ ଉଡ଼ି ସେଠାରେ ବସୁଅଛି । କଜଳପାତି ଗଛ ଉପରେ ବସି ରାବୁଅଛି । କୁ କୁ କୋଇଲି ଡାକୁଅଛି । ଆସ, ବହି ଘେନି ପାଠଶାଳାକୁ ଯିବା । ସେଠାରେ ମନ ଦେଇ ପାଠ ପଢ଼ିବା । ଗୁରୁଙ୍କ ଆଦେଶ ମାନିବା ।



ବେଳ ବୁଡ଼ିଲାଣି । ପାଠଶାଳା ଛୁଟି ହେଲାଣି । ଘରକୁ ଯିବା ଚାଲ । ଘରେ ବହି ଥୋଇଦେଇ ମା' ଯାହା ଖାଇବାକୁ ଦେବେ ତାହା ଖାଇବା । ଖାଇସାରି ଲୁଚକାଳି ଖେଳିବା । ଖେଳି ସାରିଲେ ବାପା ଯାହା କହିବେ ତାହା କରିବା । ଦିନ ବେଳେ ଯାହା ପଢ଼ିଥିବା ରାତିରେ ତାହାକୁ ଆଉଥରେ ପଢ଼ିବା । ପଢ଼ିସାରି ଭାତ ଖାଇ ଶୋଇବା । ରେବତୀର ଘରେ ଢୋଲ ବାଜୁଅଛି । କୈଳାସର ଭଉଣୀ ଗୌରୀ ବହି ପଢ଼ୁଅଛି ।



ଗାଈ ବାଛୁରୀ ଆସ ଆସ । ଖାଇବ ପରା ଦୂବ ଘାସ ।
ମୋର ପାଖରେ ହୁଅ ଛିଡ଼ା । ଖାଇବ ଯେବେ ଘାସବିଡ଼ା ।



ଆରେ ମୋର ପୁଷି, ଖା'ରେ ଯେତେ ଖୁସି, ଦୁଧ ଭାତ ମିଠା,
ଖାଇବୁ ଘି ପିଠା । ମୋ ପାଖରେ ବସି, ଖା'ରେ ମୋର ପୁଷି ।



## ‘ଂ’ ଅନୁସ୍ୱାର ଯୋଗ

| ଅ + ଂ = ଅଂ | କ + ଂ = କଂ | ମା + ଂ = ମାଂ | ସି + ଂ = ସିଂ |
|---|---|---|---|



| | | | |
|---|---|---|---|
| କଂସ | ହିଂସା | ସଂସାର | ଦଂଶନ |
| ବଂଶ | ଅଂଶୁ | କିଂଶୁକ | ସଂବାଦ |
| ଅଂଶ | ମାଂସ | ସଂଶୟ | ବିଂଶତି |
| ସିଂହ | ବଂଶୀ | ମୀମାଂସା | ସଂହତି |



ହଂସ ଖେଳୁଛି ନଦୀନୀରେ । ବଂଶୀ ବାଜୁଛି ନଦୀତୀରେ

ସିଂହ ରହେ ବଣରେ

ହଂସ ରହେ ଜଳରେ

ହିଂସା କଲେ ଅପର ଲୋକେ ମିଳେ ଓଲଟା ଫଳରେ ।



ବଂଶୀ ବାଜେ ମଧୁର

ସଂସାରଟା ଅସାର

ମନରେ ଯଦି ସଂଶୟ ଆସେ ଆହୁରି ଥରେ ବିଚାର ।



## ‘ଃ’ ବିସର୍ଗ ଯୋଗ

| ଆ + ଃ = ଆଃ | କ + ଃ = କଃ | ନି + ଃ = ନିଃ | ଦୁ + ଃ = ଦୁଃ |
|---|---|---|---|



| | | |
|---|---|---|
| ଦୁଃଖ | ଦୁଃଖିତ | ଦୁଃସାହସ |
| ଛିଃଛିଃ | ନିଃଶେଷ | ଦୁଃସମୟ |
| ଦୁଃଖୀ | ନିଃସହାୟ | ନିଃସଂଶୟ |

ସୁଖ ପରେ ଦୁଃଖ ଦୁଃଖ ପରେ ସୁଖ

ଲାଗିଛି ସଦା ଏ ସଂସାରେ ।

ଦୁଃସମୟେ କେବେ ଦୁଃଖିତ ନ ହୋଇ

ହସି ଅପରକୁ ହସାରେ ।



## 'ँ' ଚନ୍ଦ୍ରବିନ୍ଦୁ ଯୋଗ

| ଉ+ ँ=ଉଁ | କ+ ँ=କଁ | ଗା+ ँ=ଗାଁ |
|---|---|---|
| ନିଆଁ | ପାଉଁଶ | କଅଁଳାପିଲା |
| ନାହିଁ | ଭଉଁରି | ଯାଆଁଳାଭାଇ |
| ମାମୁଁ | ଚଉଁରୀ | କଳାଚଅଁର |







ଚକା ଚକା ଭଉଁରି । ମାମୁଁ ଘର ଚଉଁରୀ ।
ମାମୁଁ ମାଡ଼ ଖାଇଲି । ଭୂଇଁରେ ମୁଁ ଶୋଇଲି ।
ମାଇଁ ମୋତେ ଧଇଲେ । ଦୁଧ ଭାତ ଖୋଇଲେ ।
ଭଲପିଲା ମୁହିଁରେ । ମୋ ପରି କେ ନାହିଁରେ ।



## '୍' ହଳନ୍ତ ଯୋଗ

| କ୍ | ଖ୍ | ଗ୍ | ଘ୍ | ଚ୍ | ଛ୍ | ଜ୍ |
|---|---|---|---|---|---|---|

| ସତ୍ | ଈଷଦ୍ | ହଠାତ୍ | ଚକ୍‌ଚକ୍ |
|---|---|---|---|
| ଚିତ୍ | ଶରଦ୍ | ଜଗତ୍ | ଜକ୍‌ଜକ୍ |



ଚକ୍ ଚକ୍ ଚକ୍ ବିଜୁଳି ମାରେ
ବହେ ଶୀତଳ ବାଆ ।
ଧୋବ ଫର୍ ଫର୍ ବଗ ବଗୁଲୀ
ଆକାଶେ ଉଡ଼ି ଯା ।



ତୁ, ତୁ, ତୁ, ଡାକିଲି ମୁହିଁ
ଦୌଡ଼ି ଆସିଲୁ କୁକୁର ତୁହି ।
ଆଉଁସି ଦେବିରେ ଦେହ ତୋହର,
ଖାଇବାକୁ ଦେବି ଭାତ ମୋହର ।
ମୋ କଥା ମାନିବୁ ଜାଣଇ ମୁହିଁ ।
ଯେଣେ ଯିବି ମୁହିଁ ଯିବୁରେ ତୁହି ।

ଦ୍ୱିତୀୟ ଭାଗ



## 'ୟ' ଫଳା (ୟ= ୍ୟ)

କ+ୟ=କ୍ୟ    ଖ+ୟ=ଖ୍ୟ

ଗ୍ୟ ଘ୍ୟ ଚ୍ୟ ଛ୍ୟ ଜ୍ୟ ଝ୍ୟ ଟ୍ୟ ଠ୍ୟ ଡ୍ୟ ଢ୍ୟ ତ୍ୟ ଥ୍ୟ ଦ୍ୟ ଧ୍ୟ ନ୍ୟ

ସଭ୍ୟ ବିଦ୍ୟା ଶଯ୍ୟା ଆଳସ୍ୟ ସୌଭାଗ୍ୟ

ମୁଖ୍ୟ ମୃତ୍ୟୁ ବୈଦ୍ୟ ଅସଂଖ୍ୟ ବ୍ୟବସାୟ

ନିତ୍ୟ ମୂଲ୍ୟ ଭୃତ୍ୟ ସାହାଯ୍ୟ ଆବଶ୍ୟକ

ଶସ୍ୟ ନ୍ୟାୟ ଖ୍ୟାତି ସାମାନ୍ୟ ମିଥ୍ୟାବାଦୀ



ମିଥ୍ୟାକୁ ପାପ ବୋଲି ଜାଣି । କହିବ ସଦା ସତ୍ୟ ବାଣୀ ।

ବିଦ୍ୟା ଅଟଇ ମହାଧନ । ଆଳସ୍ୟ ଦୁଃଖର କାରଣ ।



## 'ର' ଫଳା (ର= ୍ର)

କ+ର=କ୍ର    ଖ+ର=ଖ୍ର

ଗ୍ର ଘ୍ର ତ୍ର ଛ୍ର ଜ୍ର ଝ୍ର ଟ୍ର ଠ୍ର ଡ୍ର ଢ୍ର ତ୍ର ଥ୍ର ଦ୍ର ଧ୍ର ନ୍ର ପ୍ର ବ୍ର ଭ୍ର ମ୍ର ହ୍ର



ଚକ୍ର ଶୀଘ୍ର କ୍ରୀଡ଼ା ବିଶ୍ରାମ ପରିଶ୍ରମ

ବଜ୍ର ପ୍ରିୟ ଗୃଧ୍ର ପ୍ରଶଂସା ପ୍ରଜାପତି

ଶ୍ରମ ଗ୍ରାମ ହ୍ରଦ ସମୁଦ୍ର ନଦୀସ୍ରୋତ

ନିଦ୍ରା ଭ୍ରାତା ଚିତ୍ର ସହସ୍ର ତାମ୍ରପାତ୍ର

ପ୍ରଜାପତିଟି ହରଷରେ । ବସିଛି ଫୁଲର ଉପରେ ।

ପରିଶ୍ରମ କର ପ୍ରତି ଦିବସ । କଦାଚ ନ ହୁଅ ଆଳସ୍ୟବଶ ।

ଖେଳବେଳେ ଖେଳ    ପଢ଼ାବେଳେ ପାଠ

ପଢ଼ିବାରେ ମନ ଦିଅ ।

ମିଠା କଥା କହି    ମନ ମୋହିନେଲେ

ଜଗତରେ ହେବ ପ୍ରିୟ ।



## ଳ ଫଳା (ଳ = ୍ଳ) । ଲ ଫଳା (ଲ = ୍ଲ)

କ+ଳ=କ୍ଳ | ଖ+ଳ=ଖ୍ଳ | ହ+ଲ=ହ୍ଲ | ଲ+ଲ=ଲ୍ଲ

ଶୁକ୍ଳ ମ୍ଳାନ ଶ୍ଳୋକ ଅଶ୍ଳୀଳ ଭଲ୍ଲୁକ

ଅମ୍ଳ ଗ୍ଳାନି କ୍ଳେଶ ପ୍ଳାବନ ଉଲ୍ଲାସ

କ୍ଳୀବ ଶ୍ଳାଘ୍ୟ ଶ୍ଳେଷ ଆପ୍ଳୁତ ପଲ୍ଲବ

ଭଲ୍ଲୁକ ପାଶକୁ ନ ଯାଅ ବାବୁ । ଚାଟି ଖାଇଦେବ ମାଉଁସ ସବୁ ।
କାହାରିକୁ କ୍ଳେଶ ନ ଦିଅ କେବେ । ସଂସାରେ ପ୍ରଶଂସା ଲଭିବ ତେବେ ।
ପ୍ରହ୍ଲାଦ ଆହ୍ଲାଦେ ଗାଉଛି ଗୀତ । ମୁଁ ଗାଇବି ମିଶି ତାହା ସହିତ ।

## (ୱ) ବ ଫଳା (ବ = ୍ୱ)

କ+ବ=କ୍ୱ | ଖ+ବ=ଖ୍ୱ

ଗ୍ୱ ଘ୍ୱ ଚ୍ୱ ଜ୍ୱ ଝ୍ୱ ଞ୍ୱ ଟ୍ୱ ଠ୍ୱ ଡ୍ୱ ଢ୍ୱ ତ୍ୱ ଥ୍ୱ ଦ୍ୱ ଧ୍ୱ ନ୍ୱ ପ୍ୱ ଭ୍ୱ ଶ୍ୱ ସ୍ୱ ହ୍ୱ

ପକ୍ୱ ଜ୍ୱାଳା ଧ୍ୱଂସ ସ୍ୱାମୀ ରାଜତ୍ୱ ତପସ୍ୱୀ

ଜ୍ୱର ଦ୍ୱାର ସାଧ୍ୱୀ ସ୍ୱାଦ ଈଶ୍ୱର ଗହ୍ୱର

ଦ୍ୱିଜ ଶ୍ୱାସ ସ୍ୱର ପୃଥ୍ୱୀ ସ୍ୱଭାବ ଆହ୍ୱାନ

ବିଶ୍ୱ ଧ୍ୱନି ଦ୍ୱୀପ ଜିହ୍ୱା ଆଶ୍ୱିନ ବିଦ୍ୱାନ



ଜ୍ୱରକୁ ଔଷଧ ଜ୍ୱାଳାକୁ ମହୁ । ଖଟାଖ୍ୱଆ ବାଗ ପଛକୁ ଥାଉ ।
ଦ୍ୱାର ଦ୍ୱାର ବୁଲି ମାଗଇ ଦୁଃଖୀ । ଭିଖ ପାଇଲେ ସେ ହୁଅଇ ସୁଖୀ ।
ଅଶ୍ୱଟିଏ ଦେଖ ହୋଇଛି ଠିଆ । ମୁହଁରେ ଲାଗିଛି ଲଗାମ ନୂଆ ।



## 'ନ' ଫଳା (ନ= ୍ନ)

କ+ନ=କ୍ନ    ଖ+ନ=ଖ୍ନ

ଗ୍ନ ଘ୍ନ ଚ୍ନ ଜ୍ନ ତ୍ନ(ତ୍‌ନ) ନ୍ନ ପ୍ନ ବ୍ନ ମ୍ନ ଶ୍ନ ସ୍ନ ହ୍ନ



| | | | | |
|---|---|---|---|---|
| ଲଗ୍ନ | ଯତ୍ନ(ତ୍‌ନ) | ପ୍ରଶ୍ନ | ମଧ୍ୟାହ୍ନ | ଜଗନ୍ନାଥ |
| ଅଗ୍ନି | ରତ୍ନ(ତ୍‌ନ) | ନିମ୍ନ | ଆହ୍ନିକ | ଅବସନ୍ନ |
| ବିଘ୍ନ | ଛିନ୍ନ | ଚିହ୍ନ | ପନ୍ନଗ | ସନ୍ନିବେଶ |
| ସ୍ୱପ୍ନ | ଅନ୍ନ | ବହ୍ନି | ପ୍ରସନ୍ନ | ସନ୍ନିଧାନ |

ସ୍ନାନ କଲି ମୁହିଁ ମଧ୍ୟାହ୍ନ କାଳେ । ରତ୍ନ ମୁଦିଟିଏ ହଜିଲା ଜଳେ ।
ଆରେ ଜହ୍ନ ମାମୁଁ ଶରଦ ଶଶୀ ! ମୋ କାହ୍ନୁ ହାତରେ ପଡ଼ରେ ଖସି ।



ଯତ୍ନ କଲେ ରତ୍ନ ମିଳେ ଏ ସାର ବଚନ
ମନେ ରଖିଥିବ ସଦା ଆହେ ଶିଶୁଗଣ ।



## 'ମ' ଫଳା (ମ= ୍ମ)

କ+ମ=କ୍ମ    ତ+ମ=ତ୍ମ(ତ୍‌ମ)    ହ+ମ=ହ୍ମ

ଖ୍ମ ଗ୍ମ ଘ୍ମ ଙ୍ମ ଟ୍ମ ଠ୍ମ ଣ୍ମ ଦ୍ମ ଧ୍ମ ନ୍ମ ମ୍ମ ଶ୍ମ ଷ୍ମ ସ୍ମ

| | | | | | |
|---|---|---|---|---|---|
| ପଦ୍ମ | ରଶ୍ମି | ଆତ୍ମା(ତ୍‌ମା) | ଶ୍ମଶାନ | ସମ୍ମାନ | ପଦ୍ମାବତୀ |
| ସଦ୍ମ | ଗୁଳ୍ମ | ଶ୍ମଶ୍ରୁ | ବ୍ରାହ୍ମଣ | ମୃଣ୍ମୟ | ଅକସ୍ମାତ୍ |
| ଛଦ୍ମ | ଉଷ୍ମ | ବ୍ରହ୍ମ | ଶାଲ୍ମଳୀ | ବାଲ୍ମୀକି | ହିରଣ୍ମୟ |
| ଜନ୍ମ | ଭସ୍ମ | ସ୍ମୃତି | ସ୍ମରଣ | ଉନ୍ମାଦ | ପରାଙ୍ମୁଖ |

ଗୁରୁ ବ୍ରାହ୍ମଣ ପିତାମାତା । ସଭିଏଁ ଆମର ଦେବତା ।
ସ୍ମରଣ କଲେ ମହେଶ୍ୱର । ଆତ୍ମା ହୋଇବ ଭବ ପାର ।
ଫୁଟିଅଛି ପଦ୍ମଫୁଲ ସରୋବର ଜଳେ,
ଆସରେ ତୋଳିବା ପଦ୍ମ ମିଳିଣ ସକଳେ ।







## ରେଫ ଯୋଗ (ରେଫ = ‍ର୍‍)

କ + ରେଫ (ର୍) = ର୍କ    ଖ + ରେଫ (ର୍) = ର୍ଖ

ର୍ଗ ର୍ଘ ର୍ଚ ର୍ଛ ର୍ଜ ର୍ଝ ର୍ଟ ର୍ଠ ର୍ଡ ର୍ଣ ର୍ତ ର୍ଥ ର୍ଦ ର୍ନ ର୍ପ ର୍ବ ର୍ଷ ର୍ହ



| | | | | | |
|---|---|---|---|---|---|
| ଗର୍ବ | ଧର୍ମ | ମୂର୍ଖ | କର୍କଶ | ଦୁର୍ନାମ | ନିର୍ମାଣ |
| ସର୍ପ | ଘର୍ମ | ଦୀର୍ଘ | କର୍ପୂର | ଦୁର୍ଜନ | ନିର୍ଝର |
| ଦର୍ପ | ବ୍ୟର୍ଥ | କର୍ଣ୍ଣ | ବାର୍ଷିକ | ଗର୍ଜନ | ନିର୍ଭୟ |
| ତର୍କ | ଅର୍ହ | ବର୍ଷ | ଦୁର୍ଗତି | ନିର୍ଜନ | ସମର୍ଥ |
| କର୍ମ | ବର୍ହ | ଅର୍ଘ୍ୟ | ଦୁର୍ବଳ | ଆଦର୍ଶ | ବିମର୍ଷ |



ନିର୍ଦ୍ଦୟ କର୍କଶ କଥା ମୁଖେ ନ କହିବ ।
ମଧୁର ବଚନ କହି ସକଳେ ତୋଷିବ ।
ପର୍ବତ ଦେହରୁ ବର୍ଷା କାଳରେ । ବହଇ ନିର୍ଝର ଧାରା ଝର୍ଝରେ ।
ଡାମରା କାଉରେ ଡାମରା କାଉ । ପର୍ବତେ ପର୍ବତେ ବୋବାଉ ଥାଉ ।



## ଯୁକ୍ତାକ୍ଷର



| | | | | |
|---|---|---|---|---|
| ଙ + କ = ଙ୍କ | ପଙ୍କ | ଶଙ୍କା | ଅଙ୍କୁର | ସଙ୍କେତ |
| ଙ + ଖ = ଙ୍ଖ | ଶଙ୍ଖ | ପଙ୍ଖା | ଶୃଙ୍ଖଳା | ସଙ୍ଖୁଡ଼ି |
| ଙ + ଗ = ଙ୍ଗ | ସଙ୍ଗ | ଭଙ୍ଗା | ସଙ୍ଗୀତ | ଅଙ୍ଗୁଳି |
| ଙ + ଘ = ଙ୍ଘ | ଜଙ୍ଘ | ସଙ୍ଘ | ଲଙ୍ଘନ | ଜଙ୍ଘିଆ |

ପଙ୍କଜ ଶଙ୍ଖ ବଜାଇଣ । ରଙ୍ଗେ ଲଙ୍ଘିଲା ଘୋରବନ ।







ଞ + ଚ = ଞ୍ଚ ମଞ୍ଚ ଚଞ୍ଚଳ କାଞ୍ଚନ ସଞ୍ଚୟ

ଞ + ଛ = ଞ୍ଛ ବାଞ୍ଛା ଲାଞ୍ଛନା ପିଞ୍ଛ ଚାଞ୍ଛିବା

ଞ + ଜ = ଞ୍ଜ ଖଞ୍ଜ ପାଞ୍ଜି ଅଞ୍ଜଳି ପିଞ୍ଜରା

ଞ + ଝ = ଞ୍ଝ ପଞ୍ଝା ବାଞ୍ଝ

କାଞ୍ଚନେ ବାଞ୍ଛା ନାହିଁ ମୋର । ମାଗଇ ପ୍ରଭୁ କୃପା ତୋର ।
ପାଞ୍ଜି ଉପରେ ହୁଆତ ରଖ । କାଗଜ ଧରି ସଙ୍ଗୀତ ଲେଖ ।
ପଞ୍ଝାଏ ଖଞ୍ଜ ବସି ବସି । କଥା କହନ୍ତି ହସି ହସି ।





ଣ + ଟ = ଣ୍ଟ ଘଣ୍ଟା କାଣ୍ଟି କଣ୍ଟକ ଝୁଣ୍ଟିଆ

ଣ + ଠ = ଣ୍ଠ କଣ୍ଠ ଗଣ୍ଠି ଆଣ୍ଠୁ କୁଣ୍ଠିତ

ଣ + ଡ = ଣ୍ଡ ମୁଣ୍ଡ ଭଣ୍ଡା ଚାଣ୍ଡାଳ ଗଣ୍ଡୂଷ

ଣ + ଢ଼ = ଣ୍ଢ ଶୁଣ୍ଢ ମେଣ୍ଢା ଷଣ୍ଢ

ଘଣ୍ଟି ବାଜଇ ଠନ୍ ଠନ୍ । ଘଣ୍ଟା ବାଜଇ ଢଂ ଢଂ ।
ମେଣ୍ଢା ମୁଣ୍ଡଟି ବଡ଼ ଟାଣ । ତା ମୁଣ୍ଡିଆକୁ ସାବଧାନ ।
ଦୁଃଖୀକୁ ଦାନ ଦେବା ପାଇଁ । କୁଣ୍ଠିତ ନ ହୋଇବ କେହି ।



ନ + ତ = ନ୍ତ ଦାନ୍ତ ଚିନ୍ତା ସନ୍ତୋଷ

ନ + ଥ = ନ୍ଥ କନ୍ଥା ମନ୍ଥନ ରୋମନ୍ଥ

ନ + ଦ = ନ୍ଦ ମନ୍ଦ ମନ୍ଦିର ସନ୍ଦେହ

ନ + ଧ = ନ୍ଧ ଅନ୍ଧ ସନ୍ଧ୍ୟା ବନ୍ଧୁକ

ଧନ୍ୟ ଯେ ସଦା ବାସ କରେ । ଶାନ୍ତି ସନ୍ତୋଷ ଆନନ୍ଦରେ ।
ଦରିଦ୍ର ପିନ୍ଧେ ଛିଣ୍ଡା କନ୍ଥା । ଅନ୍ଧକୁ ନ ଦିଶଇ ପନ୍ଥା ।







ମ + ପ = ମ୍ପ   କମ୍ପ   ସମ୍ପନ୍ନ   ପିମ୍ପୁଡ଼ି

ମ + ଫ = ମ୍ଫ   ଲମ୍ଫ   ଗୁମ୍ଫା   ବାମ୍ଫୀ

ମ + ବ = ମ୍ବ   ଆମ୍ବ   କମ୍ବୁ   ସମ୍ବାଦ

ମ + ଭ = ମ୍ଭ   ରମ୍ଭା   କୁମ୍ଭ   କୁମ୍ଭୀର

ସମ୍ପଦ କାଳେ ସର୍ବେ ସଖା । ବିପଦେ ନ ଦିଅନ୍ତି ଦେଖା ।
ବାମ୍ଫୀର ଜଳ ସୁଶୀତଳ । ସୁବାସ ଆମ୍ବର ମୁକୁଳ ।
କୁମ୍ଭୀର ବଡ଼ ଭୟଙ୍କର । ନାଶଇ କେତେ ନାରୀନର ।



କ + କ = କ୍କ   ଚିକ୍କଣ   ଧିକ୍କାର   କୁକ୍କୁଟ

କ + ଟ = କ୍ଟ   ଆକ୍ଟ   ଟ୍ରାକ୍ଟର   କଲେକ୍ଟର

କ + ତ = କ୍ତ   ରକ୍ତ   ଶକ୍ତି   ବିଭକ୍ତ

କ + ଷ = କ୍ଷ   ପକ୍ଷ   ଦକ୍ଷିଣ   ପରୀକ୍ଷା

କ + ସ = କ୍ସ   ବାକ୍ସ   ନକ୍ସା   ରିକ୍ସା

ଗ + ଗ = ଗ୍ଗ   ଗୁଗ୍ଗୁଳ   (ଗୁଗ୍‌ଗୁଳ)

ଗ + ଦ = ଗ୍ଦ   ବାଗ୍ଦାନ   ବାଗ୍ଦେବୀ   ବାଗ୍ଦତ୍ତା

ଗ + ଧ = ଗ୍ଧ   ଦୁଗ୍ଧ   ମୁଗ୍ଧ   ସ୍ନିଗ୍ଧ



କୁକ୍କୁଟ ମୁଣ୍ଡେ ଅଛି ଚୂଳ । ମାଟି ଭିତରେ ବୃକ୍ଷମୂଳ ।
ସାଧୁର ଲକ୍ଷଣ ଈଶ୍ୱର ଭକ୍ତି । ଦୁଗ୍ଧପାନ କଲେ ବଢ଼ଇ ଶକ୍ତି ।

ଚ + ଚ = ଚ୍ଚ   ଉଚ୍ଚ   ସଚ୍ଚା   ସଚ୍ଚିନ୍ତା

ଚ + ଛ = ଚ୍ଛ   ଗୁଚ୍ଛ   ଆଚ୍ଛା   କଚ୍ଛପ

ଚ + ଞ = ଚ୍ଞ   ଯାଚ୍ଞା

ଜ + ଜ = ଜ୍ଜ   କଜ୍ଜଳ   ଲଜ୍ଜା   ସଜ୍ଜନ

ଜ + ଝ = ଜ୍ଝ   କୁଜ୍ଝଟି   କୁଜ୍ଝଟିକା

ଜ + ଞ = ଜ୍ଞ   ଯଜ୍ଞ   ଆଜ୍ଞା   ବିଜ୍ଞାନ

ଜ୍ଞାନୀ ସଜ୍ଜନ ସଙ୍ଗ ଧରି । ମନ ନିର୍ମଳ ସ୍ୱଚ୍ଛ କରି ।
ପ୍ରଭୁଙ୍କ ନାମ ଉଚ୍ଚାରଣ । କର ହେ ନରନାରୀଗଣ ।





ଟ + ଟ = ଟ୍ଟ ପଟ୍ଟ ଅଟ୍ଟହାସ ଅଟ୍ଟାଳିକା
ଡ + ଗ = ଡ୍ଗ ଖଡ୍ଗ ଖଡ୍ଗୀ ଖଡ୍ଗଧାରୀ
ଡ + ଡ = ଡ୍ଡ ଉଡ୍ଡୀନ ଉଡ୍ଡୟନ ଉଡ୍ଡୀୟମାନ
ଣ + ଣ = ଣ୍ଣ କ୍ଷୁଣ୍ଣ ଅକ୍ଷୁଣ୍ଣ ବିଷଣ୍ଣ

ବିବିଧ ରଙ୍ଗର ପତାକାମାନ । ଅଟ୍ଟାଳିକା ଶିରେ ଉଡ୍ଡୀୟମାନ
ଖଡ୍ଗ ଅବା ଖଣ୍ଡା ଧରି ଚାଲେ ଖଣ୍ଡାଇତ ।
ଖଡ୍ଗ ଯୋଗୁଁ ଖଡ୍ଗୀ ବୋଲି ଗଣ୍ଡାର ବିଦିତ ।



ତ + କ = ତ୍କ ଉତ୍କଳ, ଚିତ୍କାର, ଉତ୍କଣ୍ଠା
ଦ + ଘ = ଦ୍ଘ ଉଦ୍ଘାଟନ
ତ + ତ = ତ୍ତ ଉତ୍ତମ, ଉତ୍ତାପ, ଉତ୍ତର
ଦ + ଦ = ଦ୍ଦ ଉଦ୍ଦେଶ, ଉଦ୍ଦେଶ୍ୟ, ଉଦ୍ଦୀପନା
ତ + ଥ = ତ୍ଥ ଉତ୍ଥାନ, ଅଶ୍ୱତ୍ଥ, ଉତ୍ଥାପନ
ଦ + ଧ = ଦ୍ଧ ଯୁଦ୍ଧ, ବୁଦ୍ଧି, ଉଦ୍ଧାର
ତ + ପ = ତ୍ପ ଉତ୍ପଳ, ଉତ୍ପନ୍ନ, ବିତ୍ପାତ
ଦ + ବ = ଦ୍ବ ଉଦ୍ବାହ, ବୁଦ୍ବୁଦ
ତ + ସ = ତ୍ସ ବତ୍ସ, ବତ୍ସର, ସମ୍ବତ୍ସର
ଦ + ଭ = ଦ୍ଭ ଉଦ୍ଭବ, ସଦ୍ଭାବ, ଅଦ୍ଭୁତ
ଦ + ଗ = ଦ୍ଗ ମୁଦ୍ଗର, ଉଦ୍ଗାର
ଦ + ଯ = ଦ୍ୟ ଉଦ୍ୟୋଗ



ଉତ୍ତର ଦିଗେ ବୃକ୍ଷଡାଳେ । ପେଚା ରାବିଲା ରାତ୍ରିକାଳେ ।
ଆମ୍ଭ ଜନ୍ମଭୂମି ଉତ୍କଳ ଦେଶ । ଉତ୍କଳ କୀରତି ଅଟେ ଅଶେଷ ।
ସର୍ବ ଉତ୍ପାତୁଁ ତୋତେ ହରି । ରଖନ୍ତୁ ବତ୍ସ କୃପା କରି ।
ଅନନ୍ତ ଅଦ୍ଭୁତ ମହିମା । କେ କହି ପାରେ ତାର ସୀମା ।
ଉଦ୍ୟୋଗ କଲେ ସର୍ବସିଦ୍ଧି । ତପସ୍ୟା କଲେ ଚିତ୍ତଶୁଦ୍ଧି ।



ପ + ତ = ପ୍ତ ଗୁପ୍ତ, ସପ୍ତମ
ବ + ଜ = ବ୍ଜ ଅବ୍ଜ, କୁବ୍ଜ
ପ + ପ = ପ୍ପ ଖପ୍ପା, ପିପ୍ପଳୀ
ବ + ଦ = ବ୍ଦ ଶବ୍ଦ, ଅବ୍ଦ
ବ + ଧ = ବ୍ଧ ଲବ୍ଧ, ଆରବ୍ଧ
ପ + ସ = ପ୍ସ ବୀପ୍ସା, ଅପ୍ସରା
ବ + ବ = ବ୍ବ ତିବ୍ବତ(ତିବ୍‌ବତ)

ଅବ୍ଜ ଫୁଟିଛି ସରୋବରେ । ବେଢ଼ି ଅଛନ୍ତି ମଧୁକରେ ।
କହିବ ନାହିଁ ଗୁପ୍ତ କଥା । ନ ଦିଅ ଲୋକ ମନେ ବ୍ୟଥା ।
ପଡ଼ନ୍ତେ କର୍ଣ୍ଣେ ସେହି ଶବ୍ଦ । ଆନନ୍ଦ ପ୍ରାଣେ ହେଲା ଲବ୍ଧ ।



| | |
|---|---|
| ମ + ମ = ମ୍ମ ସମ୍ମାନ, ସମ୍ମାନନୀୟ | ଷ + ଟ = ଷ୍ଟ କଷ୍ଟ, ଦୁଷ୍ଟ, ସମଷ୍ଟି |
| ଳ + କ = ଳ୍କ ଶୁଳ୍କ, ବଳ୍କଳ | ଷ + ଠ = ଷ୍ଠ ଷଷ୍ଠ, କନିଷ୍ଠ, ନିଷ୍ଠୁର |
| ଲ + କ = ଲ୍କ ଉଲ୍କା | ଷ + ଣ = ଷ୍ଣ କୃଷ୍ଣ, ବୈଷ୍ଣବ, ସହିଷ୍ଣୁ |
| ଲ + ଗ = ଲ୍ଗ ଫଲ୍ଗୁ, ଫାଲ୍ଗୁନ | ଷ + ପ = ଷ୍ପ ପୁଷ୍ପ, ନିଷ୍ପାପ, ନିଷ୍ପୀଡ଼ନ |
| ଳ + ପ = ଳ୍ପ ଗଳ୍ପ, କଳ୍ପନା, ସଂକଳ୍ପ | ଷ + ଫ = ଷ୍ଫ ନିଷ୍ଫଳ, ନିଷ୍ଫେନ |
| ଳ + ଫ = ଳ୍ଫ ଗୁଳ୍ଫ | ସ + କ = ସ୍କ ତସ୍କର, ପୁରସ୍କାର, ନମସ୍କାର |
| ଳ + ଭ = ଳ୍ଭ ପ୍ରଗଳ୍ଭ | ସ + ଖ = ସ୍ଖ ସ୍ଖଳନ |
| ଲ + ଲ = ଲ୍ଲ ପଲ୍ଲବ, ବଲ୍ଲଭ | ସ + ତ = ସ୍ତ ଅସ୍ତ, ବିସ୍ତାର, ଅଗସ୍ତି |
| ଶ + ଚ = ଶ୍ଚ ନିଶ୍ଚୟ, ପଶ୍ଚାତ୍, ପଶ୍ଚିମ | ସ + ଥ = ସ୍ଥ ସ୍ଥଳ, ସ୍ଥାନ, ସ୍ଥାପନ |
| ଶ + ଛ = ଶ୍ଛ ଶିରଶ୍ଛେଦ, ଦୁଶ୍ଛେଦ୍ୟ | ସ + ପ = ସ୍ପ ସ୍ପର୍ଶ, ପରସ୍ପର |
| ଷ + କ = ଷ୍କ ଶୁଷ୍କ, ଦୁଷ୍କର, ପରିଷ୍କାର | ସ + ଫ = ସ୍ଫ ସ୍ଫଟିକ, ସ୍ଫୀତ, ଆସ୍ଫାଳନ |



ଫାଲ୍‌ଗୁନ ମାସରେ ଦୋଳଯାତ୍ରା । ଆଗ କାଳରେ ଲୋକେ ବଳ୍କଳ ପିନ୍ଧୁଥିଲେ । ପଶ୍ଚିମ ଦିଗରେ ଅଳ୍ପମେଘ ଉଠିଅଛି । ଶୁଷ୍କ କାଷ୍ଠ ଜାଳିବାକୁ ଭଲ । ଗୁରୁଜନମାନଙ୍କୁ ନମସ୍କାର କର । କେତେକ ବୃକ୍ଷ ପୁଷ୍ପବନ୍ତ, କିନ୍ତୁ ନିଷ୍ଫଳ । ଜଳ ଗରମ କଲେ ସେଥିରୁ ବାଷ୍ପ ବାହାରେ । ସ୍ଫଟିକ ସ୍ୱଚ୍ଛ ଅଟେ । ତାଙ୍କ ମୁଖ ନିସ୍ତେଜ ଦିଶୁଅଛି । ଦୟାଳୁ ଲୋକେ ଦୁଃଖୀମାନଙ୍କର କଷ୍ଟ ହରଣ କରନ୍ତି । ବେଙ୍ଗ ଓଳିତଳେ ବସିଅଛି ।



| | |
|---|---|
| କ + ତ + ର = କ୍ତ୍ର | ବକ୍ତ୍ର |
| କ + ଷ + ଣ = କ୍ଷ୍ଣ | ତୀକ୍ଷ୍ଣ |
| କ + ଷ + ମ = କ୍ଷ୍ମ | ସୂକ୍ଷ୍ମ, ଯକ୍ଷ୍ମା, ଲକ୍ଷ୍ମୀ |
| କ + ଷ + ଯ = କ୍ଷ୍ୟ | ଲକ୍ଷ୍ୟ, ସାକ୍ଷ୍ୟ, ଭକ୍ଷ୍ୟ |
| ଙ + କ + ତ = ଙ୍କ୍ତ | ପଙ୍କ୍ତି |
| ଙ + କ + ଷ = ଙ୍କ୍ଷ | ଆକାଙ୍କ୍ଷା |
| ଜ + ଜ + ବ = ଜ୍ଜ୍ୱ | ଉଜ୍ଜ୍ୱଳ |
| ଣ + ଡ + ର = ଣ୍ଡ୍ର | ପୁଣ୍ଡ୍ର |
| ତ + ତ + ବ = ତ୍ତ୍ୱ | ତତ୍ତ୍ୱ, ମହତ୍ତ୍ୱ, ସତ୍ତ୍ୱ |
| ତ + ତ + ର = ତ୍ତ୍ର | ପୁତ୍ତ୍ର |
| ତ + ମ + ଯ = ତ୍ମ୍ୟ | ମାହାତ୍ମ୍ୟ, ଦୌରାତ୍ମ୍ୟ |
| ତ + ସ + ନ = ତ୍ସ୍ନ | ଜ୍ୟୋତ୍ସ୍ନା |
| ତ + ସ + ଯ = ତ୍ସ୍ୟ | ମତ୍ସ୍ୟ |
| ନ + ତ + ଯ = ନ୍ତ୍ୟ | ଅନ୍ତ୍ୟ |
| ନ + ତ + ର = ନ୍ତ୍ର | ତନ୍ତ୍ର, ଯନ୍ତ୍ର, ମନ୍ତ୍ରୀ |
| ନ + ତ + ବ = ନ୍ତ୍ୱ | ସାନ୍ତ୍ୱନା |
| ନ + ଦ + ର = ନ୍ଦ୍ର | ଚନ୍ଦ୍ର, ଇନ୍ଦ୍ର, ଇନ୍ଦ୍ରିୟ |
| ନ + ଦ + ବ = ନ୍ଦ୍ୱ | ଦ୍ୱନ୍ଦ୍ୱ |
| ନ + ଧ + ର = ନ୍ଧ୍ର | ରନ୍ଧ୍ର |
| ନ + ଧ + ଯ = ନ୍ଧ୍ୟ | ବିନ୍ଧ୍ୟ, ସନ୍ଧ୍ୟା, ବନ୍ଧ୍ୟା |
| ନ + ନ + ଯ = ନ୍ନ୍ୟ | ସନ୍ନ୍ୟାସ, ସନ୍ନ୍ୟାସୀ |
| ମ + ପ + ର = ମ୍ପ୍ର | ସମ୍ପ୍ରତି, ସମ୍ପ୍ରଦାନ |
| ମ + ଭ + ର = ମ୍ଭ୍ର | ସମ୍ଭ୍ରମ, ସମ୍ଭ୍ରାନ୍ତ |
| ର + ଚ + ଚ = ର୍ଚ୍ଚ | ଅର୍ଚ୍ଚନା, ଚର୍ଚ୍ଚା |
| ର + ଚ + ଛ = ର୍ଚ୍ଛ | ମୂର୍ଚ୍ଛା, ମୂର୍ଚ୍ଛନା |
| ର + ଣ + ଣ = ର୍ଣ୍ଣ | ସ୍ୱର୍ଣ୍ଣ, ପୂର୍ଣ୍ଣ, ଚୂର୍ଣ୍ଣ |
| ର + ତ + ତ = ର୍ତ୍ତ | କର୍ତ୍ତନ, କୀର୍ତ୍ତି, ମୂର୍ତ୍ତି |
| ର + ଦ + ଦ = ର୍ଦ୍ଦ | ଗର୍ଦ୍ଦଭ, ମର୍ଦ୍ଦନ |
| ର + ଦ + ଧ = ର୍ଦ୍ଧ | ଅର୍ଦ୍ଧ, ନିର୍ଦ୍ଧାରିତ |
| ର + ତ + ସ = ର୍ତ୍ସ | ଭର୍ତ୍ସନା |
| ର + ଦ + ର = ର୍ଦ୍ର | ଆର୍ଦ୍ର |
| ର + ଯ + ଯ = ର୍ଯ୍ୟ | କାର୍ଯ୍ୟ, ଧୈର୍ଯ୍ୟ, ସୂର୍ଯ୍ୟ |
| ର + ଶ + ବ = ର୍ଶ୍ୱ | ପାର୍ଶ୍ୱ, ପାରିପାର୍ଶ୍ୱିକ |
| ଷ + କ + ର = ଷ୍କ୍ର | ନିଷ୍କ୍ରିୟ |
| ଷ + ଟ + ର = ଷ୍ଟ୍ର | ଉଷ୍ଟ୍ର, ରାଷ୍ଟ୍ର |
| ଷ + ପ + ର = ଷ୍ପ୍ର | ଦୁଷ୍ପ୍ରାପ୍ୟ, ନିଷ୍ପ୍ରୟୋଜନ |
| ସ + ତ + ର = ସ୍ତ୍ର | ଅସ୍ତ୍ର, ଶାସ୍ତ୍ର, ବସ୍ତ୍ର |
| ସ + ଥ + ଯ = ସ୍ଥ୍ୟ | ସ୍ୱାସ୍ଥ୍ୟ, ଗାର୍ହସ୍ଥ୍ୟ |
| ନ + ତ + ର + ଯ = ନ୍ତ୍ର୍ୟ | ସ୍ୱାତନ୍ତ୍ର୍ୟ |
| ର + ତ + ତ + ଯ = ର୍ତ୍ତ୍ୟ | ମର୍ତ୍ତ୍ୟ |
| ର + ତ + ତ + ର = ର୍ତ୍ତ୍ର | କର୍ତ୍ତ୍ରୀ |
| ର + ଦ + ଧ + ବ = ର୍ଦ୍ଧ୍ୱ | ଊର୍ଦ୍ଧ୍ୱ |

ବୁଦ୍ଧିଆଣୀ ଜାଲ ବଡ଼ ସୂକ୍ଷ୍ମ । ମୂଷିକର ଦନ୍ତ ତୀକ୍ଷ୍ଣ । ଉଦ୍ୟୋଗୀ ପୁରୁଷକୁ ଲକ୍ଷ୍ମୀ ମିଳେ । ସେ ତୁମ୍ଭର ଶୁଭାକାଙ୍କ୍ଷୀ ଅଟନ୍ତି । ଶରତ୍ କାଳରେ ଚନ୍ଦ୍ର ଅତିଶୟ ଉଜ୍ଜ୍ୱଳ ଦିଶେ । ତାହାଙ୍କର ମହତ୍ତ୍ୱ ବିଷୟ ଚିନ୍ତା କର । ଶୋକାର୍ତ୍ତ ଲୋକକୁ ସାନ୍ତ୍ୱନା ଦିଅ । ଚକ୍ଷୁ, କର୍ଣ୍ଣ, ନାସା, ଜିହ୍ୱା, ତ୍ୱକ୍ ବା ଚର୍ମ୍ମ ଏହି ପାଞ୍ଚ ଇନ୍ଦ୍ରିୟ । ସନ୍ଧ୍ୟା ସମୟରେ ସନ୍ନ୍ୟାସୀ ଧ୍ୟାନ କରନ୍ତି । ପିତା କନ୍ୟା ସମ୍ପ୍ରଦାନ କଲେ । ସଂସ୍କୃତ ଶାସ୍ତ୍ରର ଚର୍ଚ୍ଚା କର । ସେ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ଆର୍ଦ୍ର ବସ୍ତ୍ର ପିନ୍ଧିବ ନାହିଁ । ତାଙ୍କ ପରି ସଜ୍ଜନ ଦୁର୍ଲ୍ଲଭ । ଦକ୍ଷିଣ ପାର୍ଶ୍ୱରେ ପୀଡ଼ା ହୋଇଅଛି । ସର୍ବସୁଖର ମୂଳ ସ୍ୱାସ୍ଥ୍ୟ । ଅର୍ଦ୍ଧରାତ୍ର ସମୟରେ ମୁଁ ଊର୍ଦ୍ଧ୍ୱକୁ ଅନାଇ ନକ୍ଷତ୍ରପୂର୍ଣ୍ଣ ଆକାଶକୁ ଦେଖିଲି । ସମୟକୁ ନିଷ୍ପ୍ରୟୋଜନ କାର୍ଯ୍ୟରେ ନଷ୍ଟ କରିବ ନାହିଁ ।

## ବିବିଧ ପାଠ

ମସ୍ତକ ଦେହର ଉତ୍ତମ ଅଙ୍ଗ । ପ୍ରତି ହସ୍ତରେ ପାଞ୍ଚ ଅଙ୍ଗୁଳି । ପ୍ରତି ପାଦରେ ପାଞ୍ଚ ଅଙ୍ଗୁଳି । ମନୁଷ୍ୟର ଦୁଇଟି ବାହୁ, ଦୁଇଟି ହସ୍ତ, ଦୁଇଟି ପାଦ, ଦୁଇଟି କର୍ଣ୍ଣ, ଦୁଇଟି ଓଷ୍ଠ ଅଛି । ନାସିକାରେ ଦୁଇଟି ରନ୍ଧ୍ର ଅଛି । ଉଦରରେ ପାକଯନ୍ତ୍ର ଅଛି । ମସ୍ତକରୁ ପାଦ ପର୍ଯ୍ୟନ୍ତ ସମସ୍ତ ଦେହରେ ରକ୍ତ ପ୍ରବାହିତ ହେଉଅଛି ।

ପରମେଶ୍ୱର ତୁମ୍ଭଙ୍କୁ ଏବଂ ଆଉସବୁ ଜୀବମାନଙ୍କୁ ସୃଷ୍ଟି କରିଅଛନ୍ତି । ସେ ତୁମ୍ଭଙ୍କୁ ଦେଖିବା ପାଇଁ ଚକ୍ଷୁ, ଶୁଣିବା ପାଇଁ କର୍ଣ୍ଣ, ଶୁଙ୍ଘିବା ପାଇଁ ନାସିକା, ସ୍ୱାଦ ବାରିବା ପାଇଁ ଜିହ୍ୱା, କଥା କହିବା ପାଇଁ ମୁଖ, ପଦାର୍ଥମାନ ଧରିବା ପାଇଁ ହସ୍ତ, ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ପାଇଁ ପାଦ ଦେଇଅଛନ୍ତି । ସେ ଚନ୍ଦ୍ର, ସୂର୍ଯ୍ୟ ଓ ନକ୍ଷତ୍ର ଇତ୍ୟାଦି ସୃଷ୍ଟି କରିଅଛନ୍ତି । ଚନ୍ଦ୍ରର ଆଲୋକକୁ ଜ୍ୟୋତ୍ସ୍ନା ବୋଲାଯାଏ । ପୃଥିବୀ ସୂର୍ଯ୍ୟର ଚତୁର୍ଦ୍ଦିଗରେ ବର୍ଷକେ ଥରେ ବୁଲେ ।





# ସୁନ୍ଦର ସଂସାର



ଆକାଶ ଦିଶେ କି ସୁନ୍ଦର । ତାହାକୁ ରଚିଲେ ଈଶ୍ୱର ।
ଉଜ୍ଜ୍ୱଳ ସୂର୍ଯ୍ୟ, ଚନ୍ଦ୍ର, ତାରା । ନୀଳ ସମୁଦ୍ର, ଶ୍ୟାମ ଧରା ।
ପର୍ବତ, ନଦୀ, ତରୁମାନ । ସୃଜିଲେ ପ୍ରଭୁ ଭଗବାନ ।
ନାନା ବର୍ଣ୍ଣର ଫୁଲ ଫଳ । ବୃକ୍ଷର ପଲ୍ଲବ କୋମଳ ।
ମନୁଷ୍ୟ, ପଶୁ, ପକ୍ଷୀ ଆଦି । ସକଳ ସୃଜିଲେ ଅନାଦି ।
ତାଙ୍କର ଆଜ୍ଞାରେ ପବନ । ସର୍ବତ୍ର କରେ ବିଚରଣ ।
ଅଗ୍ନି ତାଙ୍କର ଆଦେଶରେ । ଉତ୍ତାପ, ତେଜ ଦାନ କରେ ।
ଈଶ୍ୱର ଦୟାର ସାଗର । ତାଙ୍କର ମହିମା ସୁମର ।

# ପରମେଶ୍ୱର



ଯାହା ମୁଁ କରଇ, ଯାହା ମୁଁ କହଇ, ଯାହା ମୁଁ ଚିନ୍ତଇ ମନେ ।
ଜଗତର କର୍ତ୍ତା, ପରମ-ଈଶ୍ୱର ଜାଣୁଛନ୍ତି ପ୍ରତିକ୍ଷଣେ ।
ମୋ ପାଶେ ଅଛନ୍ତି, ଦିବସ ରଜନୀ, ମହାପ୍ରଭୁ ପରାତ୍ପର ।
ଏ କଥା ସୁମରି, ହୃଦୟେ ତାହାଙ୍କୁ ପୂଜିବି ମୁଁ ନିରନ୍ତର ।



# ସ୍ତବ



କି ସୁନ୍ଦର ଆହା, କି ଆନନ୍ଦମୟ, ଏହି ବିଶାଳ ସଂସାର ।
ଧନ୍ୟ ମହାପ୍ରଭୁ, ମହିମା ତୁମ୍ଭର, ଅଟେ ଅନନ୍ତ ଅପାର ।
ସୂର୍ଯ୍ୟ ଚନ୍ଦ୍ର ତାରା, ତୁମ୍ଭର ଆଜ୍ଞାରେ, ବରଷନ୍ତି ଜ୍ୟୋତିଃରାଶି ।
ତୁମ୍ଭରି କୁସୁମ, ପ୍ରତି ପ୍ରଭାତରେ, ହସଇ ଆନନ୍ଦେ ଭାସି ।
ପିତା, ମାତା, ବନ୍ଧୁ, ଭାଇ, ଭଗିନୀର ହୃଦୟେ ଦେଇଛ ପ୍ରୀତି ।
ତେଣୁ ମୁଁ ସଂସାରେ, ରହିଛି ଆନନ୍ଦେ, ସୁଖ ଭୁଞ୍ଜି ନିତି ନିତି ।
ଦିଅ ଭକ୍ତି ପ୍ରଭୁ, ହୃଦୟେ ମୋହର, ବିରାଜ ନିତ୍ୟ ତହିଁରେ ।
ସତ୍ୟ ପଥେ ରହି, ତୁମ୍ଭରି ଆଶ୍ରାରେ, ଯାଉ ମୋ ଦିନ ମହୀରେ ।



# ପ୍ରଭାତ



ପାହିଲା ଅନ୍ଧାର ରଜନୀ, ଉଠ ଉଠ ବାଳକେ ।
ନବୀନ ପ୍ରଭାତ ସମୟ, ଏବେ ଗାଅ ପୁଲକେ ।
ଦଶଦିଗ ଦେଖ ଉଜ୍ଜ୍ୱଳ, ପାଇ ରବି କିରଣ ।
ଫୁଲ ଫୁଟିଅଛି କାନନେ, ଧୀରେ ବହେ ପବନ ।
ଥିଲେ ଅଚେତନ ନିଦ୍ରାରେ, ସର୍ବେ ଧରଣୀବାସୀ ।
କି ମନ୍ତ୍ର ପଢ଼ିଲା ପ୍ରଭାତ, କେଉଁ ଦେଶରୁ ଆସି ।



ନବପ୍ରାଣ ଲଭି କ୍ଷଣକେ, ଜାଗି ଉଠିଲେ ସର୍ବେ ।
ଆକାଶ ପୃଥିବୀ ପୂରିଲା, ମହା ଆନନ୍ଦ ରବେ ।
ବିହଙ୍ଗେ ଗାଇଲେ ସଙ୍ଗୀତ, ଆହା କି ମନୋହର ।
ସେ ଗୀତ ଶ୍ରବଣେ ହୃଦୟ, ନାଚି ଉଠେ ମୋହର ।
ବିହଙ୍ଗ ସଙ୍ଗତେ ବାଳକେ, ଗାଅ ଆନନ୍ଦ ମନେ ।
ହୃଦୟେ ସୁମରି ଜଗତ-ପିତା, ସୃଷ୍ଟି କାରଣେ ।



# ସନ୍ଧ୍ୟା

ପଶ୍ଚିମ ଦିଗରେ ବୁଡ଼ଇ ରବି । ଆହା କି ସୁନ୍ଦର ଲୋହିତ ଛବି ।
ପଶ୍ଚିମ ଆକାଶ ସିନ୍ଦୂରମୟ । ଦେଖିଲେ ପ୍ରଫୁଲ୍ଲ ହୁଏ ହୃଦୟ ।
କ୍ରମେ ଅନ୍ଧକାର ଆସଇ ଘୋଟି । ଉଇଁଲେଣି ତାରା ଗୋଟି କି ଗୋଟି ।
ଚରା ସାରି ପକ୍ଷୀ ଆକାଶେ ଉଡ଼ି । ବସାକୁ ଆନନ୍ଦେ ଗଲେ ବାହୁଡ଼ି ।
ହଳ କାମ ସାରି କୃଷକମାନେ । ଫେରି ଯାଉଛନ୍ତି ଦିନାବସାନେ ।
ବାଳକେ ଆସିଲେ ପାଠଶାଳାରୁ । ହସ ହସ ମୁଖ ଦିଶେ ସୁଚାରୁ ।
ଲଗାଇଲେ ସଞ୍ଜଦୀପ ଘରଣୀ । ଅନ୍ଧକାରେ ବୁଡ଼ିଗଲା ଧରଣୀ ।





# ଭୁଲିବୁ ନାହିଁ



ଧନ୍ୟ ତୁମେ ମାତା ! ଧନ୍ୟ ତୁମେ ପିତା !
ତୁମ ସମ କେହି ନାହିଁ,
ଜନମ ଦେଇଛ ଯତନେ ପାଳିଛ
ଆମେ ତା' ଭୁଲିବୁ ନାହିଁ ।



ବିଦ୍ୟା ଆମ ମିତ ବିଦ୍ୟା ଆମ ବଳ
ବିଦ୍ୟା ତ ସବୁରି ଧନ,
ନ ବୁଝି ଏହାକୁ ଅବୁଝା ହୁଏ ଯେ
ମୂର୍ଖ ହୁଏ ସେହି ଜାଣ ।



କର୍ତ୍ତବ୍ୟ ପାଳନ କରିବୁ ଆମେରେ
ଧନଯଶ ଲାଭ ପାଇଁ,
କାପୁରୁଷ ପରି ଭାଗ୍ୟକୁ ଆଦରି
ଦୁଃଖ ତ ଭୋଗିବୁ ନାହିଁ ।



ପର ଦୁଃଖ ଦେଖି କାତର ହୋଇଲେ
ମଣିଷରେ ହେବୁ ଗଣା,
ପର ହିତ ଲାଗି ଜୀବନ ତେଜିଲେ
ଗୁଣ ହେବ ଆମ ଜଣା ।



ସାଧୁ ସନ୍ଥ ସଙ୍ଗେ ବାସ ଯେ କରିବୁ
ସୁଶିକ୍ଷା ପାଇବା ପାଇଁ,
ହୀନଜନଠାରୁ ଦୂରେଇ ରହିବୁ
କୁଶିକ୍ଷା ଲଭିବୁ ନାହିଁ ।

# ସଂକ୍ଷିପ୍ତ ଜୀବନୀ



## ଉତ୍କଳ ଗୌରବ ମଧୁସୂଦନ ଦାସ

ମଧୁସୂଦନ ଦାସ ୧୮୪୮ ମସିହା ଅପ୍ରେଲ୍ ମାସ ୨୮ ତାରିଖରେ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଚୌଧୁରୀ ରଘୁନାଥ ଦାସ ଓ ମାତାଙ୍କ ନାମ ପାର୍ବତୀ ଦେବୀ । ପିଲାଦିନୁ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ମିଳିଥିଲା ।

ସେ ଏମ୍.ଏ. ଏବଂ ଓକିଲାତି ପାସ୍ କରିବା ପରେ କଲିକତାରେ ଓକିଲାତି ଆରମ୍ଭ କରିଥିଲେ । କଲିକତାରୁ ଆସି କଟକରେ ଓକିଲାତି କଲାବେଳେ ଲୋକେ ତାଙ୍କୁ 'ମଧୁବାରିଷ୍ଟର' ବୋଲି ଡାକିଲେ । ସେ ଉତ୍କଳ ଟାନେରୀ ଏବଂ ଓଡ଼ିଶା ତାରକସିକାମ ନାମକ ଦୁଇଟି ଶିଳ୍ପାନୁଷ୍ଠାନ ପ୍ରତିଷ୍ଠା କରିଥିଲେ । ଏହି ବରପୁତ୍ରଙ୍କର ୧୯୩୪ ମସିହା ଫେବୃୟାରୀ ମାସ ୪ ତାରିଖରେ ଦେହାନ୍ତ ହୋଇଥିଲା । ଜାତି ଉଦ୍ଦେଶ୍ୟରେ ସେ ଉତ୍କଳ ସମ୍ମିଳନୀରେ ଆହ୍ୱାନ ଦେଇ କହିଥିଲେ :

ଏହି ସମ୍ମିଳନୀ ଜାତି ପ୍ରାଣ ସିନ୍ଧୁ କୋଟି ପ୍ରାଣ ବିନ୍ଦୁ ଧରେ ।
ତୋର ପ୍ରାଣ ବିନ୍ଦୁ ମିଶାଇ ଦେ ଭାଇ ଡେଇଁ ପଡ଼ି ସିନ୍ଧୁ ନୀରେ ।।

ତାଙ୍କୁ ଉତ୍କଳ ଗୌରବ ଭାବେ ସମସ୍ତେ ସମ୍ମାନ କରୁଥିଲେ ।



## ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ

ଗୋପବନ୍ଧୁ ଦାସ ୧୮୭୭ ମସିହା ଅକ୍ଟୋବର ୯ ତାରିଖରେ ପୁରୀ ଜିଲ୍ଲାର ସୁଆଣ୍ଡୋ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଦୈତ୍ୟାରି ଦାସ ଓ ମାତାଙ୍କ ନାମ ସ୍ୱର୍ଣ୍ଣମୟୀ ଦେବୀ । ବାଲ୍ୟକାଳରୁ ଦୁଃଖୀର ଦୁଃଖ ଦେଖିଲେ ତାଙ୍କ ପ୍ରାଣ କାନ୍ଦିଉଠୁଥିଲା । ପାଠପଢ଼ା ସହିତ ଜନସେବାରେ ସେ ମନପ୍ରାଣ ଢାଳି ଦେଉଥିଲେ । ଭାରତକୁ ସ୍ୱାଧୀନ କରିବାରେ ତାଙ୍କ ଅବଦାନ କିଛି କମ୍ ନୁହେଁ ।
ଦେଶର ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ସେ ଲେଖିଥିଲେ :

ମିଶୁ ମୋର ଦେହ ଏ ଦେଶ ମାଟିରେ, ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ ପଥେ ଯେତେ ଗାଡ଼, ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।।

ସେ ସତ୍ୟବାଦୀଠାରେ ୧୯୦୯ ମସିହାରେ ସତ୍ୟବାଦୀ ବନବିଦ୍ୟାଳୟ ସ୍ଥାପନ କରିଥିଲେ । ପ୍ରସିଦ୍ଧ ଦୈନିକ ସମ୍ବାଦପତ୍ର 'ସମାଜ' ତାଙ୍କଦ୍ୱାରା ପ୍ରଥମେ ପ୍ରକାଶିତ ହୋଇଥିଲା । ଜନମାନସରେ ସେ ଉତ୍କଳମଣି ଭାବେ ପରିଚିତ ଥିଲେ । ୧୯୨୮ ମସିହା ଜୁନ୍ ମାସ ୧୭ ତାରିଖରେ ଏହି ମହାନ୍ ଦେଶସେବକ ପରଲୋକ ଗମନ କରିଥିଲେ ।

# ମହାତ୍ମା ଗାନ୍ଧି



ମହାତ୍ମା ଗାନ୍ଧି ୧୮୬୯ ମସିହା ଅକ୍ଟୋବର ମାସ ୨ ତାରିଖରେ ଗୁଜୁରାଟର ପୋରବନ୍ଦରଠାରେ ଜନ୍ମଗ୍ରହଣ କରିଥିଲେ । ମୋହନ ଦାସ କରମ ଚାନ୍ଦ ଗାନ୍ଧି ଥିଲା ତାଙ୍କର ପୂରା ନାମ । ତାଙ୍କର ବାପାଙ୍କର ନାମ ଥିଲା କରମ ଚାନ୍ଦ ଗାନ୍ଧି ଓ ଲୋକେ ତାଙ୍କୁ କାବା ଗାନ୍ଧି ବୋଲି ଡାକୁଥିଲେ । ମୋହନ ଦାସଙ୍କର ମା'ଙ୍କର ନାମ ଥିଲା ପୁତୁଳି ବାଈ । ସତ୍ୟ କହିବା ମହାତ୍ମା ଗାନ୍ଧିଙ୍କ ଜୀବନର ମୂଳ ଲକ୍ଷ୍ୟ ଥିଲା । ସେହି ସତ୍ୟ ଓ ଅହିଂସାକୁ ତାଙ୍କର ଜୀବନର ଏକ ଅଙ୍ଗ ରୂପେ ଧରି ଇଂରେଜ ସରକାରଙ୍କ ବିରୋଧରେ ଭାରତକୁ ସ୍ୱାଧୀନ କରିବା ପାଇଁ ସେ ଲଢ଼ିଥିଲେ । ଏହାଦ୍ୱାରା ତାଙ୍କୁ ବହୁ କଷ୍ଟ ଭୋଗ କରିବାକୁ ପଡ଼ିଥିଲା । ସେ ମଧ୍ୟ ବହୁବାର କାରାବରଣ କରିଥିଲେ । ଶେଷରେ ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖରେ ତାଙ୍କରି ପ୍ରଚେଷ୍ଟାରେ ଭାରତ ସ୍ୱାଧୀନ ହୋଇଥିଲା ।

ଗାନ୍ଧିଜୀ ଭାରତକୁ ସ୍ୱାଧୀନ କଲେ ମଧ୍ୟ ଭାରତର ଆଭ୍ୟନ୍ତରୀଣ ବ୍ୟାପାରରେ ଗଣ୍ଡଗୋଳ ଦେଖାଦେଇଥିଲା । ନାଥୁରାମ୍ ଗଡ୍‌ସେ ନାମକ ଜଣେ ଭ୍ରାନ୍ତ ଯୁବକ ଗାନ୍ଧିଜୀଙ୍କୁ ଏଥିପାଇଁ ଦାୟୀ କରି ଗୁଳି କରି ମାରି ଦେଇଥିଲା । ତାହା ଥିଲା ୧୯୪୮ ମସିହା ଜାନୁୟାରୀ ମାସ ୩୦ ତାରିଖ ।

# ନେତାଜୀ ସୁଭାଷଚନ୍ଦ୍ର ବୋଷ



ସୁଭାଷଚନ୍ଦ୍ର ବୋଷ ୧୮୯୭ ମସିହା ଜାନୁୟାରୀ ମାସ ୨୩ ତାରିଖ ଶନିବାର ଦିନ କଟକର ଓଡ଼ିଆ ବଜାରଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ଜାନକୀ ନାଥ ବୋଷ ଓ ମାତାଙ୍କର ନାମ ଥିଲା ପ୍ରଭାବତୀ ଦେବୀ । ବାଲ୍ୟକାଳରୁ ସେ ପିତାମାତାଙ୍କୁ ବିଶେଷ ଭକ୍ତି କରୁଥିଲେ । ଜଗତର ହିତ ସାଧନ ପାଇଁ ମନୁଷ୍ୟ କର୍ମ କରିବା ଆବଶ୍ୟକ - ଏହା ସେ ଭଲଭାବେ ବୁଝିଥିଲେ । ୧୯୩୦ ମସିହା ଲବଣ ସତ୍ୟାଗ୍ରହରେ ସୁଭାଷ ବୋଷ ଯୋଗ ଦେଇଥିଲେ । ପରେ ସେ ଜାତୀୟ କଂଗ୍ରେସର ସଭାପତି ହୋଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥିବା ବେଳେ ସୁଭାଷ ବୋଷ ଜାନୁୟାରୀ ୧୬ ତାରିଖରେ ଛଦ୍ମବେଶରେ ଭାରତରୁ ଆଫଗାନିସ୍ଥାନ୍ ଓ ପରେ ଜର୍ମାନୀ ଚାଲିଯାଇଥିଲେ । ସେ "ଆଜାଦ୍ ହିନ୍ଦ୍ ଫୌଜ" ଗଠନ କରି ଇଂରେଜ ସରକାର ବିରୁଦ୍ଧରେ ଲଢ଼େଇ କରିଥିଲେ । ଏହାପରେ ତାଙ୍କର ଖୋଜ ଖବର ରଖିବାରେ ଅସୁବିଧା ହୋଇଥିଲା ।

## ଗଣେଶ ବନ୍ଦନା



ନମଇଁ ପ୍ରଭୁ ଲମ୍ବୋଦର ।
ପାଶ-ଅଙ୍କୁଶ ବେନି କର ॥
କରୀ-କପାଳେ ଶୋହେ ଚିତା ।
ବିଦ୍ୟା-ବୁଦ୍ଧିରେ ଜଗଜ୍ଜେତା ॥
ଯାହା ପ୍ରସାଦେ ନିରନ୍ତର ।
ସକଳ ବିଘ୍ନ ହୁଏ ଦୂର ॥
ତାଙ୍କ ପୟରେ ମୋର ମତି ।
ସିଦ୍ଧି ଦିଅନ୍ତୁ ଗଣପତି ॥

## ସରସ୍ୱତୀ ବନ୍ଦନା



କଜ୍ଜ୍ୱଳ-ପୂରିତ-ଲୋଚନ ଧାରେ ।
ସ୍ତନଯୁଗ-ଶୋଭିତ-ମୁକୁତାହାରେ ॥
ବୀଣା-ପୁସ୍ତକ-ରଞ୍ଜିତ ହସ୍ତେ ।
ଭଗବତୀ ଭାରତୀ ଦେବୀ ନମସ୍ତେ ॥
ଅଇଲେ ସରସ୍ୱତୀ ନିର୍ମଳ ବର୍ଣ୍ଣେ ।
ରତ୍ନ-ବିଭୂଷିତ କୁଣ୍ଡଳ କର୍ଣ୍ଣେ ॥
ଗଳାରେ ଗଜମୋତି-ମୁକୁତା-ହାର ।
ଦିଅ ମା' ସରସ୍ୱତୀ ବିଦ୍ୟା-ଭଣ୍ଡାର ॥

## ଦେଶ ବନ୍ଦନା



ବନ୍ଦେ ଉତ୍କଳ ଜନନି ।
ଚାରୁ ହାସମୟି ଚାରୁ ଭାଷମୟି
ଜନନି, ଜନନି, ଜନନି ।
ପୂତ-ପୟୋଧି-ବିଧୌତ-ଶରୀରା,
ତାଳ-ତମାଳ-ସୁଶୋଭିତ-ତୀରା,
ଶୁଭ୍ର ତଟିନୀକୂଳ-ଶୀକର-ସମୀରା
ଜନନି, ଜନନି, ଜନନି ॥
ଘନ ବନ ଭୂମି ରାଜିତ ଅଙ୍ଗେ,
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନି, ଜନନି, ଜନନି ॥
ସୁନ୍ଦରଶାଳି-ସୁଶୋଭିତକ୍ଷେତ୍ରା,
ଜ୍ଞାନବିଜ୍ଞାନ-ପ୍ରଦର୍ଶିତ-ନେତ୍ରା,
ଯୋଗି-ଋଷିଗଣ-ଉଟଜ-ପବିତ୍ରା
ଜନନି, ଜନନି, ଜନନି ॥
ସୁନ୍ଦର-ମନ୍ଦିର-ମଣ୍ଡିତ-ଦେଶା,
ଚାରୁକଳା ବଳି-ଶୋଭିତ-ବେଶା,
ପୁଣ୍ୟ-ତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନି, ଜନନି, ଜନନି ॥
ଉତ୍କଳ-ସୁରବର-ଦର୍ପିତ-ଗେହା,
ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା,
ବିଶ୍ୱଭୂମଣ୍ଡଳ-କୃତବର-ସ୍ନେହା,
ଜନନି, ଜନନି, ଜନନି ॥
କବିକୁଳ-ମୌଳି-ସୁନନ୍ଦନ-ବନ୍ଦ୍ୟା,
ଭୁବନ-ବିଘୋଷିତ-କୀର୍ତ୍ତି ଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିରଶରଣ୍ୟେ
ଜନନି, ଜନନି, ଜନନି ॥

ବି.ଦ୍ର. - ସମ୍ବୋଧନ ଅର୍ଥରେ ଜନନୀ 'ଜନନି' ହୋଇଅଛି ।



## ରାମଧୂନ



ରଘୁପତି ରାଘବ ରାଜାରାମ ପତିତ ପାବନ ସୀତାରାମ ।
ମଙ୍ଗଳ ପରଶନ ରାଜାରାମ ପତିତ ପାବନ ସୀତାରାମ ।
ଶୁଭଶାନ୍ତି ବିଧାୟକ ରାଜାରାମ ପତିତ ପାବନ ସୀତାରାମ ।
ବରାଭୟ ଦାନରତ ରାଜାରାମ ପତିତ ପାବନ ସୀତାରାମ ।
ନିର୍ଭୟ କର ପ୍ରଭୁ ରାଜାରାମ ପତିତ ପାବନ ସୀତାରାମ ।
ଦୀନ ଦୟାଳ ପ୍ରଭୁ ରାଜାରାମ ପତିତ ପାବନ ସୀତାରାମ ।
ରାଜାରାମ, ଜୟ ସୀତାରାମ ପତିତ ପାବନ ସୀତାରାମ ।
ଯଦୁପତି ବ୍ରଜପତି ଶ୍ୟାମାଶ୍ୟାମ ପତିତ ପାବନ ସୀତାରାମ ।
ଈଶ୍ୱର ଆଲ୍ଲା ତେରା ନାମ ସବ୍‌କୋ ସନମତି ଦେ ଭଗବାନ୍ ।
ରଘୁପତି ରାଘବ ରାଜାରାମ ପତିତ ପାବନ ସୀତାରାମ ।



## ଜଣାଣ





ଅତି ଛୋଟ ପିଲା ମୁହିଁ ଭଲମନ୍ଦ ନ ଜାଣଇ
ପ୍ରଭୁ ତୁମେ ବୁଦ୍ଧି ବାଟ ଦିଅ ବତାଇ,
ମୋର ହାତ ସ୍ନେହେ ଧରି ଅତି ଆପଣାର ପରି
ଅବାଟରେ ଗଲେ ବାଟ ନିଅ କଢ଼ାଇ ।
ଦେହେ ମୋର ଦିଅ ବଳ ମନେ ବୁଦ୍ଧି କଉଶଳ
ଭଲ କାମେ ଲାଗିଥାଉ ସଦା ମୋ ମନ ।
ଦୁଃଖୀ, ରଙ୍କୀ, ପ୍ରତିବେଶୀ ତଥା ବନ୍ଧୁ ଓ ପଡ଼ୋଶୀ
ସେବାରେ ରତ ହେଉ ମୋର ଜୀବନ ।
ଶୁଭ କାମେ ଦେବି ଲୟ ପାପକୁ କରିବି ହେୟ
ଜ୍ଞାନ ଅରଜିଣ ମୁହିଁ ହେବି ପଣ୍ଡିତ,
ଧନ ଯାହା ଅରଜିବି ଦୁଃଖୀ ହସ୍ତେ ସମର୍ପିବି
କରିବି ମୁଁ ସବୁବେଳେ ପରର ହିତ ।
ଆହେ ପ୍ରଭୁ ଜଗନ୍ନାଥ ଜଗତର ଅଟ ନାଥ
ସମସ୍ତଙ୍କ ଦୁଃଖ ତୁମେ କର ମୋଚନ,
ମୋର ଦୁଃଖ ଦୂର କର ବିପଦ-ଆପଦ ହର
ଦିବ୍ୟ ଆନନ୍ଦରେ ଭରି ଦିଅ ଜୀବନ ।।





## ଦିଗ ଓ କୋଣ

ଚାରୋଟି ଦିଗ ପରି ଚାରିଗୋଟି କୋଣ ମଧ୍ୟ ଅଛି । ସେଗୁଡ଼ିକ ହେଲା:-

୧ । ଅଗ୍ନିକୋଣ - ପୂର୍ବ ଓ ଦକ୍ଷିଣ ଦିଗ ମଝିରେ ଥିବା କୋଣ ।

୨ । ଈଶାନ୍ୟ କୋଣ - ଉତ୍ତର ଓ ପୂର୍ବ ଦିଗ ମଝିରେ ଥିବା କୋଣ ।

୩ । ନୈର୍ଋତ କୋଣ - ପଶ୍ଚିମ ଓ ଦକ୍ଷିଣ ଦିଗ ମଝିରେ ଥିବା କୋଣ ।

୪ । ବାୟୁ କୋଣ - ପଶ୍ଚିମ ଓ ଉତ୍ତର ଦିଗ ମଝିରେ ଥିବା କୋଣ ।



## ଦିନ, ରାତି, ମାସ, ବର୍ଷ



ଦିନ ରାତି ମିଶି = ୨୪ ଘଣ୍ଟା; ଦିନ = ୧୨ ଘଣ୍ଟା, ରାତି = ୧୨ ଘଣ୍ଟା

ସାତ ଦିନ = ୧ ସପ୍ତାହ; ଏକ ପକ୍ଷ = ୧୫ ଦିନ

ପକ୍ଷ = ୨ ଭାଗରେ ବିଭକ୍ତ : ଶୁକ୍ଳପକ୍ଷ ଓ କୃଷ୍ଣପକ୍ଷ

ପୂର୍ଣ୍ଣିମା ପରଦିନଠାରୁ ଅମାବାସ୍ୟା ପର୍ଯ୍ୟନ୍ତ = କୃଷ୍ଣପକ୍ଷ;

ଅମାବାସ୍ୟା ପରଦିନଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ = ଶୁକ୍ଳପକ୍ଷ ।

୧ ବର୍ଷ = ୩୬୫ ଦିନ ; ୧୨ ମାସ = ୧ ବର୍ଷ

ପଣାସଂକ୍ରାନ୍ତିଠାରୁ ଓଡ଼ିଆ ବର୍ଷ ଆରମ୍ଭ ହୁଏ । ଇଂରାଜୀ ମାସ ଜାନୁୟାରୀ ୧ ତାରିଖଠାରୁ ଆରମ୍ଭ ହୁଏ ।

| ଓଡ଼ିଆରେ ମାସର ନାମ | ଇଂରାଜୀରେ ମାସର ନାମ | ହିନ୍ଦୀରେ ମାସର ନାମ |
|---|---|---|
| ବୈଶାଖ | ଜାନୁୟାରୀ | ବୈଶାଖ |
| ଜ୍ୟେଷ୍ଠ | ଫେବୃୟାରୀ | ଜ୍ୟେଷ୍ଠ |
| ଆଷାଢ଼ | ମାର୍ଚ୍ଚ | ଆସାଢ଼ |
| ଶ୍ରାବଣ | ଏପ୍ରିଲ୍ | ସାୱାନ |
| ଭାଦ୍ରବ | ମେ | ଭାଦୋଁ |
| ଆଶ୍ୱିନ | ଜୁନ୍ | କୁଆଁର |
| କାର୍ତ୍ତିକ | ଜୁଲାଇ | କାର୍ତ୍ତିକ |
| ମାର୍ଗଶିର | ଅଗଷ୍ଟ | ମଗଶିର |
| ପୌଷ | ସେପ୍ଟେମ୍ବର | ପୁସ |
| ମାଘ | ଅକ୍ଟୋବର | ମାଘ |
| ଫାଲ୍‌ଗୁନ | ନଭେମ୍ବର | ଫାଗୁନ |
| ଚୈତ୍ର | ଡିସେମ୍ବର | ଚେତ |

୩୦ ଦିନିଆ ମାସ - ଏପ୍ରିଲ୍, ଜୁନ୍, ସେପ୍ଟେମ୍ବର ଓ ନଭେମ୍ବର

୩୧ ଦିନିଆ ମାସ - ଜାନୁୟାରୀ, ମାର୍ଚ୍ଚ, ମେ, ଜୁଲାଇ, ଅଗଷ୍ଟ, ଅକ୍ଟୋବର, ଡିସେମ୍ବର

୨୮ ଦିନିଆ ମାସ - ଫେବୃୟାରୀ

୨୯ ଦିନିଆ ମାସ - ପ୍ରତି ଚାରିବର୍ଷରେ ଥରେ ଫେବୃୟାରୀ ମାସ ୨୯ ଦିନ ହୁଏ ।



## ଋତୁ

## ବର୍ଷକରେ ୬ ଟି ଋତୁ ଭୋଗ କରାଯାଏ

୧ । ଗ୍ରୀଷ୍ମଋତୁ (ବୈଶାଖ, ଜ୍ୟେଷ୍ଠ)
୨ । ବର୍ଷାଋତୁ (ଆଷାଢ଼, ଶ୍ରାବଣ)
୩ । ଶରତଋତୁ (ଭାଦ୍ରବ, ଆଶ୍ୱିନ)
୪ । ହେମନ୍ତଋତୁ (କାର୍ତ୍ତିକ, ମାର୍ଗଶିର)
୫ । ଶୀତଋତୁ (ପୌଷ, ମାଘ)
୬ । ବସନ୍ତଋତୁ (ଫାଲ୍‌ଗୁନ, ଚୈତ୍ର)

## ଓଡ଼ିଆ, ଇଂରାଜୀ ଓ ହିନ୍ଦୀରେ ବାରମାନଙ୍କର ନାମ

| ଓଡ଼ିଆ | ଇଂରାଜୀ | ହିନ୍ଦୀ |
|---|---|---|
| ସୋମବାର | ମନ୍‌ଡେ | ସୋମ୍‌ୱାର |
| ମଙ୍ଗଳବାର | ଟିଉଜ୍‌ଡେ | ମଙ୍ଗଲ୍‌ୱାର |
| ବୁଧବାର | ୱେଡ୍‌ନେସ୍‌ଡ଼େ | ବୁଧୱାର |
| ଗୁରୁବାର | ଥର୍ସଡ଼େ | ବୃହସ୍ପତିୱାର |
| ଶୁକ୍ରବାର | ଫ୍ରାଇଡ଼େ | ଶୁକ୍ରୱାର |
| ଶନିବାର | ସଟରଡ଼େ | ଶନିୱାର |
| ରବିବାର | ସନ୍‌ଡେ | ଇତ୍‌ୱାର |



## ରାଶି ଓ ନକ୍ଷତ୍ର



ରାଶି = ୧୨, ନକ୍ଷତ୍ର = ୨୭

### ରାଶିମାନଙ୍କର ନାମ

| | |
|---|---|
| ମେଷ | ତୁଳା |
| ବୃଷ | ବିଛା |
| ମିଥୁନ | ଧନୁ |
| କର୍କଟ | ମକର |
| ସିଂହ | କୁମ୍ଭ |
| କନ୍ୟା | ମୀନ |

### ନକ୍ଷତ୍ରମାନଙ୍କର ନାମ

| | | |
|---|---|---|
| ଅଶ୍ୱିନୀ | ମଘା | ମୂଳା |
| ଦ୍ୱିଜା | ପୂର୍ବାଫାଲ୍‌ଗୁନୀ | ପୂର୍ବାଷାଢ଼ା |
| କୃତ୍ତିକା | ଉତ୍ତରା ଫାଲ୍‌ଗୁନୀ | ଉତ୍ତରାଷାଢ଼ା |
| ରୋହିଣୀ | ହସ୍ତା | ଶ୍ରବଣା |
| ମୃଗଶିରା | ଚିତ୍ରା | ଧନିଷ୍ଠା |
| ଆର୍ଦ୍ରା | ସ୍ୱାତୀ | ଶତଭିଷା |
| ପୁନର୍ବସୁ | ବିଶାଖା | ପୂର୍ବଭାଦ୍ରପଦ |
| ପୁଷ୍ୟା | ଅନୁରାଧା | ଉତ୍ତର ଭାଦ୍ରପଦ |
| ଅଶ୍ଳେଷା | ଜ୍ୟେଷ୍ଠା | ରେବତୀ |



## ଘଣ୍ଟାକଣ୍ଟା ମିନିଟ୍



୧ ମିନିଟ୍ = ୬୦ ସେକେଣ୍ଡ, ୧ ଘଣ୍ଟା = ୬୦ ମିନିଟ୍, ୩ ଘଣ୍ଟା = ୧ ପ୍ରହର,
ଦିବସକାଳ = ୧୨ ଘଣ୍ଟା, ରାତ୍ରିକାଳ = ୧୨ ଘଣ୍ଟା, ୨୪ ଘଣ୍ଟା = ୧ ଦିନ



## ଦ୍ରବ୍ୟ ଗଣନା



୧ ଡଜନ୍ = ୧୨ ଟା, ୧ ଗ୍ରୋସ୍ = ୧୨ ଡଜନ୍, ୧ ସ୍କୋର = ୨୦ ଗ୍ରୋସ୍, ୧ ଦିସ୍ତା = ୨୪ ଫର୍ଦ୍ଦ
୧ ରିମ୍ = ୫୦୦ ଫର୍ଦ୍ଦ ବା ୨୦ ଦିସ୍ତା, ୧ ବେଲ୍ = ୧୦ ରିମ୍



# ଗଣନା ଶିକ୍ଷା



| | | | |
|---|---|---|---|
| ୧ | ଏକ ଆତ | ୧୧ | ଏଗାର ଘର |
| ୨ | ଦୁଇ ସଙ୍ଗାତ | ୧୨ | ବାର ଦୁଆର |
| ୩ | ତିନି ନେଉଳ | ୧୩ | ତେର ଶୁଆ |
| ୪ | ଚାରି ଦେଉଳ | ୧୪ | ଚଉଦ କୁଆ |
| ୫ | ପାଞ୍ଚ ଆମ୍ବ | ୧୫ | ପନ୍ଦର ନୌକା |
| ୬ | ଛଅ ଡାଳିମ୍ବ | ୧୬ | ଷୋଳ ଚୌକା |
| ୭ | ସାତ ସେଓ | ୧୭ | ସତର ପାରା |
| ୮ | ଆଠ ଲାଉ | ୧୮ | ଅଠର ତାରା |
| ୯ | ନଅ ଭାଇ | ୧୯ | ଊଣେଇଶ ମଲ୍ଲୀ |
| ୧୦ | ଦଶ ଗାଈ | ୨୦ | କୋଡ଼ିଏ ପଲ୍ଲୀ |

ଗୀତରେ ସଂଖ୍ୟା ଗଣି ଶିଖିଲି ।

| | | | |
|---|---|---|---|
| ୨୧ - ଏକୋଇଶ | ୪୧ - ଏକଚାଳିଶ | ୬୧ - ଏକଷଠି | ୮୧ - ଏକାଅଶୀ |
| ୨୨ - ବାଇଶ | ୪୨ - ବୟାଳିଶ | ୬୨ - ବାଷଠି | ୮୨ - ବୟାଅଶୀ |
| ୨୩ - ତେଇଶ | ୪୩ - ତେୟାଳିଶ | ୬୩ - ତେଷଠି | ୮୩ - ତେୟାଅଶୀ |
| ୨୪ - ଚବିଶ | ୪୪ - ଚଉରାଳିଶ | ୬୪ - ଚଉଷଠି | ୮୪ - ଚଉରାଅଶୀ |
| ୨୫ - ପଚିଶ | ୪୫ - ପଞ୍ଚଚାଳିଶ | ୬୫ - ପଞ୍ଚଷଠି | ୮୫ - ପଞ୍ଚାଅଶୀ |
| ୨୬ - ଛବିଶ | ୪୬ - ଛୟାଳିଶ | ୬୬ - ଛଅଷଠି | ୮୬ - ଛୟାଅଶୀ |
| ୨୭ - ସତେଇଶ | ୪୭ - ସତଚାଳିଶ | ୬୭ - ସତଷଠି | ୮୭ - ସତାଅଶୀ |
| ୨୮ - ଅଠେଇଶ | ୪୮ - ଅଠଚାଳିଶ | ୬୮ - ଅଠଷଠି | ୮୮ - ଅଠାଅଶୀ |
| ୨୯ - ଅଣତିରିଶ | ୪୯ - ଅଣଞ୍ଚାଶ | ୬୯ - ଅଣସ୍ତୁରି | ୮୯ - ଅଣାନବେ |
| ୩୦ - ତିରିଶ | ୫୦ - ପଚାଶ | ୭୦ - ସତୁରି | ୯୦ - ନବେ |
| ୩୧ - ଏକତିରିଶ | ୫୧ - ଏକାବନ | ୭୧ - ଏକସ୍ତରି | ୯୧ - ଏକାନବେ |
| ୩୨ - ବତିଶ | ୫୨ - ବାବନ | ୭୨ - ବାସ୍ତରି | ୯୨ - ବୟାନବେ |
| ୩୩ - ତେତିଶ | ୫୩ - ତେପନ | ୭୩ - ତେସ୍ତରି | ୯୩ - ତେୟାନବେ |
| ୩୪ - ଚଉତିରିଶ | ୫୪ - ଚଉବନ | ୭୪ - ଚଉସ୍ତରି | ୯୪ - ଚଉରାନବେ |
| ୩୫ - ପଞ୍ଚତିରିଶ | ୫୫ - ପଞ୍ଚାବନ | ୭୫ - ପଞ୍ଚସ୍ତରି | ୯୫ - ପଞ୍ଚାନବେ |
| ୩୬ - ଛତିଶ | ୫୬ - ଛପନ | ୭୬ - ଛଅସ୍ତରି | ୯୬ - ଛୟାନବେ |
| ୩୭ - ସଇଁତିରିଶ | ୫୭ - ସତାବନ | ୭୭ - ସତସ୍ତରି | ୯୭ - ସତାନବେ |
| ୩୮ - ଅଠତିରିଶ | ୫୮ - ଅଠାବନ | ୭୮ - ଅଠସ୍ତରି | ୯୮ - ଅଠାନବେ |
| ୩୯ - ଅଣଚାଳିଶ | ୫୯ - ଅଣଷଠି | ୭୯ - ଅଣାଅଶୀ | ୯୯ - ଅନେଶୋତ |
| ୪୦ - ଚାଳିଶ | ୬୦ - ଷାଠିଏ | ୮୦ - ଅଶୀ | ୧୦୦ - ଶହେ |



# ମେଟ୍ରିକ୍ ପ୍ରଣାଳୀ



## ଓଜନ ମାପ



୧୦ ମିଲିଗ୍ରାମ୍ = ୧ ସେଣ୍ଟିଗ୍ରାମ୍
୧୦ ସେଣ୍ଟିଗ୍ରାମ୍ = ୧ ଡେସିଗ୍ରାମ୍
୧୦ ଡେସିଗ୍ରାମ୍ = ୧ ଗ୍ରାମ୍



୧୦ ଗ୍ରାମ୍ = ୧ ଡେକାଗ୍ରାମ୍
୧୦ ଡେକାଗ୍ରାମ୍ = ୧ ହେକ୍ଟୋଗ୍ରାମ୍
୧୦ ହେକ୍ଟୋଗ୍ରାମ୍ = ୧ କିଲୋଗ୍ରାମ୍
୧୦ କିଲୋଗ୍ରାମ୍ = ୧ ମିରିଆ ଗ୍ରାମ୍
୧୦ ମିରିଆ ଗ୍ରାମ୍ = ୧ କୁଇଣ୍ଟାଲ୍
୧୦ କୁଇଣ୍ଟାଲ୍ = ୧ ମେଟ୍ରିକ୍‌ଟନ୍

◄ମନେରଖ►

୧ କିଲୋଗ୍ରାମ୍ = ୧୦୦୦ ଗ୍ରାମ୍
୧ ଗ୍ରାମ୍ = ୧୦୦୦ ମିଲିଗ୍ରାମ୍
୧ ଟନ୍ = ୧୦୦୦ କିଲୋଗ୍ରାମ୍

## ଭୂମିମାପ



୧୦୦ ବର୍ଗ ମିଟର = ୧ ଏୟର
୧୦୦ ଏୟର = ୧ ହେକ୍ଟର
୧୦୦ ଡିସିମିଲ = ୧ ଏକର
୧ ଏକର = ୨୫ ଗୁଣ୍ଠ
୧ ହେକ୍ଟର = ପ୍ରାୟ ଅଢ଼େଇ ଏକର (୨.୪୭୧ ଏକର)

## ଦୈର୍ଘ୍ୟ ମାପ

୧୦ ମିଲିମିଟର = ୧ ସେଣ୍ଟିମିଟର
୧୦ ସେଣ୍ଟିମିଟର = ୧ ଡେସିମିଟର
୧୦ ଡେସିମିଟର = ୧ ମିଟର
୧୦ ମିଟର = ୧ ଡେକାମିଟର
୧୦ ଡେକାମିଟର = ୧ ହେକ୍ଟୋମିଟର
୧୦ ହେକ୍ଟୋମିଟର = ୧ କିଲୋମିଟର
୧୦ କିଲୋମିଟର = ୧ ମିରିଆ ମିଟର

◄ମନେରଖ►

୧ ମିଟର = ୧୦୦ ସେଣ୍ଟିମିଟର
୧ କିଲୋମିଟର = ୧୦୦୦ ମିଟର

## ତରଳ ପଦାର୍ଥର ମାପ



୧୦ ମିଲିଲିଟର = ୧ ସେଣ୍ଟିଲିଟର
୧୦ ସେଣ୍ଟିଲିଟର = ୧ ଡେସିଲିଟର
୧୦ ଡେସିଲିଟର = ୧ ଲିଟର
୧୦ ଲିଟର = ୧ ଡେକାଲିଟର
୧୦ ଡେକାଲିଟର = ୧ ହେକ୍ଟୋଲିଟର
୧୦ ହେକ୍ଟୋଲିଟର = ୧ କିଲୋଲିଟର
୧୦ କିଲୋଲିଟର = ୧ ମିରିଆ ଲିଟର

◄ମନେରଖ►

୧ ଲିଟର = ୧୦୦୦ ମିଲିଲିଟର



## ଏକ, ଦଶ, ଶତ, ସହସ୍ର,... ଗଣନା



ଏକ... ୧
ଦଶ... ୧୦
ଶତ... ୧୦୦
ସହସ୍ର... ୧୦୦୦
ଅୟୁତ... ୧୦,୦୦୦
ଲକ୍ଷ ... ୧୦୦,୦୦୦
ନିୟୁତ... ୧୦,୦୦,୦୦୦
କୋଟି... ୧୦୦,୦୦,୦୦୦
ଅର୍ବୁଦ ... ୧୦୦,୦୦୦,୦୦୦
ବୃନ୍ଦ... ୧୦୦୦୦୦୦୦୦୦୦
ଖର୍ବ... ୧୦୦୦୦୦୦୦୦୦୦୦
ନିଖର୍ବ... ୧୦୦୦୦୦୦୦୦୦୦୦୦
ଶଙ୍ଖ... ୧୦୦୦୦୦୦୦୦୦୦୦୦୦
ପଦ୍ମ ... ୧୦୦୦୦୦୦୦୦୦୦୦୦୦୦
ସାଗର... ୧୦୦୦୦୦୦୦୦୦୦୦୦୦୦୦
ଅନ୍ତ... ୧୦୦୦୦୦୦୦୦୦୦୦୦୦୦୦୦
ମଧ୍ୟ... ୧୦୦୦୦୦୦୦୦୦୦୦୦୦୦୦୦୦
ପରାର୍ଦ୍ଧ... ୧୦୦୦୦୦୦୦୦୦୦୦୦୦୦୦୦୦୦

# ପଣକିଆ

| | | | | | | | | | |
|---|---|---|---|---|---|---|---|---|---|
| ୨<br>୧<br>୨ | ୪<br>୨<br>୨ | ୬<br>୩<br>୨ | ୮<br>୪<br>୨ | ୧୦<br>୫<br>୨ | ୧୨<br>୬<br>୨ | ୧୪<br>୭<br>୨ | ୧୬<br>୮<br>୨ | ୧୮<br>୯<br>୨ | ୨୦<br>୧୦<br>୨ |
| ୩<br>୧<br>୩ | ୬<br>୨<br>୩ | ୯<br>୩<br>୩ | ୧୨<br>୪<br>୩ | ୧୫<br>୫<br>୩ | ୧୮<br>୬<br>୩ | ୨୧<br>୭<br>୩ | ୨୪<br>୮<br>୩ | ୨୭<br>୯<br>୩ | ୩୦<br>୧୦<br>୩ |
| ୪<br>୧<br>୪ | ୮<br>୨<br>୪ | ୧୨<br>୩<br>୪ | ୧୬<br>୪<br>୪ | ୨୦<br>୫<br>୪ | ୨୪<br>୬<br>୪ | ୨୮<br>୭<br>୪ | ୩୨<br>୮<br>୪ | ୩୬<br>୯<br>୪ | ୪୦<br>୧୦<br>୪ |
| ୫<br>୧<br>୫ | ୧୦<br>୨<br>୫ | ୧୫<br>୩<br>୫ | ୨୦<br>୪<br>୫ | ୨୫<br>୫<br>୫ | ୩୦<br>୬<br>୫ | ୩୫<br>୭<br>୫ | ୪୦<br>୮<br>୫ | ୪୫<br>୯<br>୫ | ୫୦<br>୧୦<br>୫ |
| ୬<br>୧<br>୬ | ୧୨<br>୨<br>୬ | ୧୮<br>୩<br>୬ | ୨୪<br>୪<br>୬ | ୩୦<br>୫<br>୬ | ୩୬<br>୬<br>୬ | ୪୨<br>୭<br>୬ | ୪୮<br>୮<br>୬ | ୫୪<br>୯<br>୬ | ୬୦<br>୧୦<br>୬ |
| ୭<br>୧<br>୭ | ୧୪<br>୨<br>୭ | ୨୧<br>୩<br>୭ | ୨୮<br>୪<br>୭ | ୩୫<br>୫<br>୭ | ୪୨<br>୬<br>୭ | ୪୯<br>୭<br>୭ | ୫୬<br>୮<br>୭ | ୬୩<br>୯<br>୭ | ୭୦<br>୧୦<br>୭ |
| ୮<br>୧<br>୮ | ୧୬<br>୨<br>୮ | ୨୪<br>୩<br>୮ | ୩୨<br>୪<br>୮ | ୪୦<br>୫<br>୮ | ୪୮<br>୬<br>୮ | ୫୬<br>୭<br>୮ | ୬୪<br>୮<br>୮ | ୭୨<br>୯<br>୮ | ୮୦<br>୧୦<br>୮ |
| ୯<br>୧<br>୯ | ୧୮<br>୨<br>୯ | ୨୭<br>୩<br>୯ | ୩୬<br>୪<br>୯ | ୪୫<br>୫<br>୯ | ୫୪<br>୬<br>୯ | ୬୩<br>୭<br>୯ | ୭୨<br>୮<br>୯ | ୮୧<br>୯<br>୯ | ୯୦<br>୧୦<br>୯ |
| ୧୦<br>୧<br>୧୦ | ୨୦<br>୨<br>୧୦ | ୩୦<br>୩<br>୧୦ | ୪୦<br>୪<br>୧୦ | ୫୦<br>୫<br>୧୦ | ୬୦<br>୬<br>୧୦ | ୭୦<br>୭<br>୧୦ | ୮୦<br>୮<br>୧୦ | ୯୦<br>୯<br>୧୦ | ୧୦୦<br>୧୦<br>୧୦ |
| ୧୧<br>୧<br>୧୧ | ୨୨<br>୨<br>୧୧ | ୩୩<br>୩<br>୧୧ | ୪୪<br>୪<br>୧୧ | ୫୫<br>୫<br>୧୧ | ୬୬<br>୬<br>୧୧ | ୭୭<br>୭<br>୧୧ | ୮୮<br>୮<br>୧୧ | ୯୯<br>୯<br>୧୧ | ୧୧୦<br>୧୦<br>୧୧ |
| ୧୨<br>୧<br>୧୨ | ୨୪<br>୨<br>୧୨ | ୩୬<br>୩<br>୧୨ | ୪୮<br>୪<br>୧୨ | ୬୦<br>୫<br>୧୨ | ୭୨<br>୬<br>୧୨ | ୮୪<br>୭<br>୧୨ | ୯୬<br>୮<br>୧୨ | ୧୦୮<br>୯<br>୧୨ | ୧୨୦<br>୧୦<br>୧୨ |
| ୧୩<br>୧<br>୧୩ | ୨୬<br>୨<br>୧୩ | ୩୯<br>୩<br>୧୩ | ୫୨<br>୪<br>୧୩ | ୬୫<br>୫<br>୧୩ | ୭୮<br>୬<br>୧୩ | ୯୧<br>୭<br>୧୩ | ୧୦୪<br>୮<br>୧୩ | ୧୧୭<br>୯<br>୧୩ | ୧୩୦<br>୧୦<br>୧୩ |

# ପଣକିଆ

| | | | | | | | | | |
|---|---|---|---|---|---|---|---|---|---|
| ୧୪<br>୧<br>୧୪ | ୨୮<br>୨<br>୧୪ | ୪୨<br>୩<br>୧୪ | ୫୬<br>୪<br>୧୪ | ୭୦<br>୫<br>୧୪ | ୮୪<br>୬<br>୧୪ | ୯୮<br>୭<br>୧୪ | ୧୧୨<br>୮<br>୧୪ | ୧୨୬<br>୯<br>୧୪ | ୧୪୦<br>୧୦<br>୧୪ |
| ୧୫<br>୧<br>୧୫ | ୩୦<br>୨<br>୧୫ | ୪୫<br>୩<br>୧୫ | ୬୦<br>୪<br>୧୫ | ୭୫<br>୫<br>୧୫ | ୯୦<br>୬<br>୧୫ | ୧୦୫<br>୭<br>୧୫ | ୧୨୦<br>୮<br>୧୫ | ୧୩୫<br>୯<br>୧୫ | ୧୫୦<br>୧୦<br>୧୫ |
| ୧୬<br>୧<br>୧୬ | ୩୨<br>୨<br>୧୬ | ୪୮<br>୩<br>୧୬ | ୬୪<br>୪<br>୧୬ | ୮୦<br>୫<br>୧୬ | ୯୬<br>୬<br>୧୬ | ୧୧୨<br>୭<br>୧୬ | ୧୨୮<br>୮<br>୧୬ | ୧୪୪<br>୯<br>୧୬ | ୧୬୦<br>୧୦<br>୧୬ |
| ୧୭<br>୧<br>୧୭ | ୩୪<br>୨<br>୧୭ | ୫୧<br>୩<br>୧୭ | ୬୮<br>୪<br>୧୭ | ୮୫<br>୫<br>୧୭ | ୧୦୨<br>୬<br>୧୭ | ୧୧୯<br>୭<br>୧୭ | ୧୩୬<br>୮<br>୧୭ | ୧୫୩<br>୯<br>୧୭ | ୧୭୦<br>୧୦<br>୧୭ |
| ୧୮<br>୧<br>୧୮ | ୩୬<br>୨<br>୧୮ | ୫୪<br>୩<br>୧୮ | ୭୨<br>୪<br>୧୮ | ୯୦<br>୫<br>୧୮ | ୧୦୮<br>୬<br>୧୮ | ୧୨୬<br>୭<br>୧୮ | ୧୪୪<br>୮<br>୧୮ | ୧୬୨<br>୯<br>୧୮ | ୧୮୦<br>୧୦<br>୧୮ |
| ୧୯<br>୧<br>୧୯ | ୩୮<br>୨<br>୧୯ | ୫୭<br>୩<br>୧୯ | ୭୬<br>୪<br>୧୯ | ୯୫<br>୫<br>୧୯ | ୧୧୪<br>୬<br>୧୯ | ୧୩୩<br>୭<br>୧୯ | ୧୫୨<br>୮<br>୧୯ | ୧୭୧<br>୯<br>୧୯ | ୧୯୦<br>୧୦<br>୧୯ |
| ୨୦<br>୧<br>୨୦ | ୪୦<br>୨<br>୨୦ | ୬୦<br>୩<br>୨୦ | ୮୦<br>୪<br>୨୦ | ୧୦୦<br>୫<br>୨୦ | ୧୨୦<br>୬<br>୨୦ | ୧୪୦<br>୭<br>୨୦ | ୧୬୦<br>୮<br>୨୦ | ୧୮୦<br>୯<br>୨୦ | ୨୦୦<br>୧୦<br>୨୦ |
| ୨୧<br>୧<br>୨୧ | ୪୨<br>୨<br>୨୧ | ୬୩<br>୩<br>୨୧ | ୮୪<br>୪<br>୨୧ | ୧୦୫<br>୫<br>୨୧ | ୧୨୬<br>୬<br>୨୧ | ୧୪୭<br>୭<br>୨୧ | ୧୬୮<br>୮<br>୨୧ | ୧୮୯<br>୯<br>୨୧ | ୨୧୦<br>୧୦<br>୨୧ |
| ୨୨<br>୧<br>୨୨ | ୪୪<br>୨<br>୨୨ | ୬୬<br>୩<br>୨୨ | ୮୮<br>୪<br>୨୨ | ୧୧୦<br>୫<br>୨୨ | ୧୩୨<br>୬<br>୨୨ | ୧୫୪<br>୭<br>୨୨ | ୧୭୬<br>୮<br>୨୨ | ୧୯୮<br>୯<br>୨୨ | ୨୨୦<br>୧୦<br>୨୨ |
| ୨୩<br>୧<br>୨୩ | ୪୬<br>୨<br>୨୩ | ୬୯<br>୩<br>୨୩ | ୯୨<br>୪<br>୨୩ | ୧୧୫<br>୫<br>୨୩ | ୧୩୮<br>୬<br>୨୩ | ୧୬୧<br>୭<br>୨୩ | ୧୮୪<br>୮<br>୨୩ | ୨୦୭<br>୯<br>୨୩ | ୨୩୦<br>୧୦<br>୨୩ |
| ୨୪<br>୧<br>୨୪ | ୪୮<br>୨<br>୨୪ | ୭୨<br>୩<br>୨୪ | ୯୬<br>୪<br>୨୪ | ୧୨୦<br>୫<br>୨୪ | ୧୪୪<br>୬<br>୨୪ | ୧୬୮<br>୭<br>୨୪ | ୧୯୨<br>୮<br>୨୪ | ୨୧୬<br>୯<br>୨୪ | ୨୪୦<br>୧୦<br>୨୪ |
| ୨୫<br>୧<br>୨୫ | ୫୦<br>୨<br>୨୫ | ୭୫<br>୩<br>୨୫ | ୧୦୦<br>୪<br>୨୫ | ୧୨୫<br>୫<br>୨୫ | ୧୫୦<br>୬<br>୨୫ | ୧୭୫<br>୭<br>୨୫ | ୨୦୦<br>୮<br>୨୫ | ୨୨୫<br>୯<br>୨୫ | ୨୫୦<br>୧୦<br>୨୫ |

# ଇଂରାଜୀ ଅକ୍ଷର ଶିକ୍ଷା

➤ ବଡ଼ ଅକ୍ଷର (CAPITAL LETTERS)

| A | B | C | D | E | F | G | H | I | J |
|---|---|---|---|---|---|---|---|---|---|
| ଏ | ବି | ସି | ଡି | ଇ | ଏଫ୍ | ଜି | ଏଚ୍ | ଆଇ | ଜେ |
| K | L | M | N | O | P | Q | R | S | T |
| କେ | ଏଲ୍ | ଏମ୍ | ଏନ୍ | ଓ | ପି | କିଉ | ଆର୍ | ଏସ୍ | ଟି |
| U | V | W | X | Y | Z | | | | |
| ଇଉ | ଭି | ଡବ୍ଲ୍ୟୁ | ଏକ୍ସ୍ | ୱାଇ | ଜେଡ୍ | | | | |

➤ ସାନ ଅକ୍ଷର (SMALL LETTERS)

| a | b | c | d | e | f | g | h | i | j |
|---|---|---|---|---|---|---|---|---|---|
| ଏ | ବି | ସି | ଡି | ଇ | ଏଫ୍ | ଜି | ଏଚ୍ | ଆଇ | ଜେ |
| k | l | m | n | o | p | q | r | s | t |
| କେ | ଏଲ୍ | ଏମ୍ | ଏନ୍ | ଓ | ପି | କିଉ | ଆର୍ | ଏସ୍ | ଟି |
| u | v | w | x | y | z | | | | |
| ଇଉ | ଭି | ଡବ୍ଲ୍ୟୁ | ଏକ୍ସ୍ | ୱାଇ | ଜେଡ୍ | | | | |

# ହିନ୍ଦୀ ଅକ୍ଷର ଶିକ୍ଷା

| अ | आ | इ | ई | उ | ऊ | ऋ | ए | ऐ | ओ | औ | अं | अः |
|---|---|---|---|---|---|---|---|---|---|---|---|---|
| ଅ | ଆ | ଇ | ଈ | ଉ | ଊ | ଋ | ଏ | ଐ | ଓ | ଔ | ଅଂ | ଅଃ |

| क | ख | ग | घ | ङ | च | छ | ज | झ | ञ | ट | ठ | ड | ढ |
|---|---|---|---|---|---|---|---|---|---|---|---|---|---|
| କ | ଖ | ଗ | ଘ | ଙ | ଚ | ଛ | ଜ | ଝ | ଞ | ଟ | ଠ | ଡ | ଢ |
| ण | त | थ | द | ध | न | प | फ | ब | भ | म | य | र | ल | व |
| ଣ | ତ | ଥ | ଦ | ଧ | ନ | ପ | ଫ | ବ | ଭ | ମ | ଯ | ର | ଲ | ୱ |

| श | ष | स | ह | क्ष | त्र | ज्ञ |
|---|---|---|---|---|---|---|
| ଶ | ଷ | ସ | ହ | କ୍ଷ | ତ୍ର | ଜ୍ଞ |


DAS
ଜନଗଣ ମନ ଅଧିନାୟକ ଜୟ ହେ
ଭାରତ ଭାଗ୍ୟ ବିଧାତା
ପଞ୍ଜାବ ସିନ୍ଧୁ ଗୁଜୁରାଟ ମରାଠା
ଦ୍ରାବିଡ଼ ଉତ୍କଳ ବଙ୍ଗ
ବିନ୍ଧ୍ୟ ହିମାଚଳ ଯମୁନା ଗଙ୍ଗା
ଉଚ୍ଛଳ ଜଳଧିତରଙ୍ଗ
ତବ ଶୁଭ ନାମେ ଜାଗେ,
ତବ ଶୁଭ ଆଶିଷ ମାଗେ,
ଗାହେ ତବ ଜୟ ଗାଥା
ଜନଗଣ ମଙ୍ଗଳ ଦାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ଜୟ ହେ, ଜୟ ହେ, ଜୟ ହେ, ଜୟ ଜୟ ଜୟ ଜୟ ହେ ।
ମୂଲ୍ୟ:
ଟ.୨୦.୦୦
ଂକଳକ : ଦେବବ୍ରତ କର
କାଶକ : ଓଡ଼ିଶା ବୁକ୍ ଏମ୍ପୋରିୟମ୍
ପ୍ରକାଶକଙ୍କଦ୍ୱାରା ସର୍ବସ୍ୱତ୍ୱ ସଂରକ୍ଷିତ